# "ଯ୍ୟାକ୍ସ ବନେଇବା ପିଲାଙ୍କ ଖେଳ ବସ୍ତୁରି କରିଲେ ଲାଗେନା ବେଳ" - ଫେଭିଫେରୀ





ଅଲୋଡ଼ା ଜିନିଷ, କତୁରି ଆଣ
ଖଣ୍ଡ ଖଣ୍ଡ କାଟ ଇଚ୍ଛା ପ୍ରମାଣ ।

ଫେଭିକଲ ଲଗାଅ, କଟା ବସ୍ତୁ ସଜାଅ
ଇଚ୍ଛା ପ୍ରମାଣେ ରୂପ ଆକାରକୁ ଦିଅ ।

କଣେଇ, ହାତି, ଘୋଡ଼ା, ହରିଣ, ଠେକୁଆ
ଗଣ୍ଡା, ମୟୂର, ବଣି, ଶୁଆ, ଶାରି, ଚଟିଆ ।

ଅଲୋଡ଼ା ଜିନିଷ, କନା ଚିରା-ଫଟା
କାଚ ହେଉକି କାଗଜ ଅବା କାଠ-ପଟା ।

ସବୁ କିଛି ଲଗି ପାରିବ
ସବୁ କିଛି ବନେଇ ହେବ ।

ଦାଗ ଲଗେନି, ଅଠିଆ ହୁଏନି
ସଫାସୁତୁରା କାମ ବୋଲି ବି ଚିହ୍ନେନି ।

ତମ କାମ ଦେଖି, ସଭିଏଁ କହନ୍ତି ବାହାବା
ତମେ କିନ୍ତୁ କୁହ ଫେଭିକଲ ଏମ୍ ଆର୍ ବାହାବା !

ଏଷ୍ଟର୍ସ କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ :
"ଫେଭି ଫେରୀ" ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।

ଏଷ୍ଟର୍ସ କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ :
"ଫେଭି ଫେରୀ" ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।



ନାମ : ____________________
ବୟସ : ____________________
ଠିକଣା : ____________________
____________________
ସହର : ____________________
ରାଜ୍ୟ : ____________ ପିନ୍‌କୋଡ୍ : ____________



ଫେଭିକଲ ଏମ୍ ଆର୍
ସିନ୍ଥେଟିକ ଅଢେସିଭ




**ଉତ୍ତମ କାମ, ଉତ୍ତମ ନାମ, ଫେଭିକଲ୍'ର ଇଏ ପରିଣାମ ।**

® ଏହି [logo] ଏବଂ ଫେଭିକଲ ବ୍ରାଣ୍ଡ, ବୃହେଁ ପିଡ଼ିଲାଇଟ ଇଣ୍ଡଷ୍ଟ୍ରୀଜ ପ୍ରା.ଲି., ବମ୍ବେ-୪୦୦ ୦୨୧ ର ରେଜିଷ୍ଟର୍ଡ ଟ୍ରେଡମାର୍କ ଅଟେ ।

OBM 9403 OR



# ଜହ୍ନମାମୁଁ

ମେ ୧୯୮୭



## ବିଷୟ-ସୂଚୀ





ପୃଷ୍ଠା ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

Mrs. Ambika Mohapatra

# ସୁପରଫାଇଟର୍‌ସ!






ତାଙ୍କ ଖେଳର ପ୍ରଶଂସକମାନେ ତାଙ୍କୁ କହନ୍ତି 'ଲିଟଲ ମାଷ୍ଟର'। ପୃଥିବୀ ଜାଣେ ସେ ସୁପରବ୍ୟାଟସମ୍ୟାନ।

କିନ୍ତୁ ସୁନିଲ ଗାଭାସ୍କର କହନ୍ତି, "ମୁଁ ହୋଇଛି ସୁପରଫାଇଟର। ମୋର ଇଚ୍ଛା ମୋ ପୁଅ ବି ଏହିଭଳି ଜଣେ ହେବ। ତେଣୁ ମୁଁ ତାକୁ ପିଲାଦିନୁ ଶିଖେଇବାକୁ ଆରମ୍ଭ କରିଛି। ବ୍ୟବହାର କରିବାକୁ ଫୋରହ୍ୟାନ୍ସ ଫ୍ଲୋରାଇଡ ଟୁଥପେଷ୍ଟ—ଦାନ୍ତ କଣା ବିରୁଦ୍ଧରେ ସୁପରଫାଇଟର।"

ଜୀବାଣୁମାନେ ଖାଦ୍ୟକଣରେ ରହି ବଢନ୍ତି ଓ ଅମ୍ଳ ଛାଡନ୍ତି। ଫଳରେ ଦାନ୍ତ କଣା ହୁଏ।

ଫୋରହ୍ୟାନ୍ସ ସୁପରଫାଇଟରରେ ଏକ ସକ୍ରିୟ ଫ୍ଲୋରାଇଡ ଅଛି ଯାହା ଦାନ୍ତର ଏନାମେଲକୁ ଶକ୍ତ କରେ। ଏହା ଦ୍ୱାରା ଦନ୍ତକ୍ଷୟ କରୁଥିବା ଜୀବାଣୁଗୁଡିକର ପ୍ରତିରୋଧ ହୁଏ।

ଆଉ ମଧ୍ୟ, ଫୋରହ୍ୟାନ୍ସର ବିଶେଷ ଆଷ୍ଟ୍ରିନଜେଣ୍ଟ ମାଢିକୁ ଜାକି ଧରି ରଖେ। ଫଳରେ ଦାନ୍ତର ଭିତ୍ତି ଆହୁରି ଦୃଢ ହୁଏ ଓ ଆୟୁଷ ମଧ୍ୟ ବଢିଯାଏ।

ସୁନିଲ ଆହୁରି କହନ୍ତି, 'ମୁଁ ମୋ ପୁଅକୁ ଦେଉଛି ଫୋରହ୍ୟାନ୍ସର ଯତ୍ନ। ଆପଣ ଦେଉଛନ୍ତି କି?'



**ଫୋରହ୍ୟାନ୍ସ**

ସୁରକ୍ଷିତ ୩୨ଟି ରତ୍ନ




# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

---

ଗ୍ରୀଷ୍ମାବକାଶ ଆସିଗଲା । ଛାତ୍ରଛାତ୍ରୀମାନେ ବର୍ତ୍ତମାନ ଛୁଟି ଉପଭୋଗ କରିବେ । ଆମେ ପୂର୍ବରୁ କହିଛୁ, ଜୀବନରେ ସତ୍ ସାହିତ୍ୟ ଭଳି ବନ୍ଧୁ ନାହିଁ । ଛାତ୍ର ଜୀବନ ପରେ ଛୁଟି ମଧ୍ୟ ମିଳିବ ନାହିଁ । ତେଣୁ ସମୟ ନଷ୍ଟ ନକରି ପ୍ରତିଦିନ କିଛି କିଛି ସମୟ ସତ୍ ସାହିତ୍ୟ ପଢ଼ିବାରେ ସମସ୍ତେ ମନ ଦେବେ ବୋଲି ଆଶା । ତଦ୍ୱାରା ଜ୍ଞାନର ପରିସର ବଢ଼ିବ ।

## ଅମରବାଣୀ

ମୁଖଂ ପଦ୍ମଦଲାକାରଂ, ବାଣୀ ଚନ୍ଦନ ଶୀତଳା ।
ହୃଦୟଂ କର୍ତ୍ତରୀତୁଲ୍ୟଂ, ତ୍ରିବିଧଂ ଧୂର୍ତ୍ତ ଲକ୍ଷଣମ୍ ॥

[ମୁହଁ ପଦ୍ମଫୁଲ ଭଳି ମଧୁର ଦିଶୁଥିବ, କଥା ଚନ୍ଦନ ଭଳି ଶୀତଳ ଲାଗୁଥିବ, କିନ୍ତୁ ହୃଦୟ ହୋଇଥିବ କତୁରୀ ଭଳି—ଧୂର୍ତ୍ତଠିଁ ଏ ତିନି ଲକ୍ଷଣ ଦେଖିବାକୁ ମିଳେ ।]

---

ବର୍ଷ : ୨୦ ମେ ୧୯୮୭ ଅଙ୍କ : ୧୧

ପ୍ରତି ସଂଖ୍ୟା : ଟ. ୨·୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

CHITRA

# Mighty as the sword!






## Make your mark...with
# APOLLO PENCILS

The space age pencils with
super bonded lead, that doesn't break
Available with attractive printed designs








**APOLLO PENCILS PVT LTD.,**
107, Regal Industrial Estate,
Acharya Donde Marg, Sewree (West),
Bombay 400 015. Ph : 4133295/4133215


Distributors : GREATER BOMBAY : **D. Jagjivandas & Company,** 177, Abdul Rehman Street, Bombay 400 003 Ph 326524 MAHARASHTRA **A. Aalok & Company** 107, Regal Industrial Estate, Acharya Donde Marg, Sewree (West) Bombay 400 015 Ph 4133295/4133215 GUJARAT **N. Chimanlal & Co** Jesmin Building, Near Khanpur, Ahmedabad 380 001 Ph 395198/399570 DELHI HARYANA PUNJAB J.K. & HIMACHAL PRADESH **Bharati Traders,** 89, Chawri Bazar, Delhi 110 006 Ph 262851 KARNATAKA ANDHRA PRADESH & GOA **Sanghvi Corporation,** Suresh Bldg., No. 17, 4th Cross, Kalasipalayam, New Extension, Bangalore 560 002 Ph 225702 CALCUTTA & WEST BENGAL **Sanghvi Corporation,** 14/1/1A, Jackson Lane, 2nd Floor, Calcutta 700 001 Ph 262141 UTTAR PRADESH **Sanghvi Corporation,** 7 A, Balmiki Marg, Kaisar Bagh, Lucknow (U.P.) Ph 35095 TAMIL NADU **Sanghvi Corporation,** Batha Complex, 1st Floor, 35, Strotten Muthia Mudaliar Street, Madras 600 079, Ph 22304 REST OF INDIA **Sanghvi Corporation,** 107, Regal Industrial Estate, Acharya Donde Marg, Sewree (West), Bombay

3 Brothers/APL

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ସୂର୍ଯ୍ୟଠୁଁ ଦଶଗୁଣ ଉତ୍ତପ୍ତ

ଆମେରିକାର ପ୍ରିନ୍‌ସ୍‌ଟନ୍‌ରେ ଅବସ୍ଥିତ ଗୋଟିଏ ଗବେଷଣାଗାରରେ ସୂର୍ଯ୍ୟର କେନ୍ଦ୍ରସ୍ଥଳଠାରୁ ଦଶଗୁଣ ଅଧିକ ଉତ୍ତାପ ଉତ୍ପାଦନ କରିପାରିଛନ୍ତି ବୈଜ୍ଞାନିକଗଣ । ଏହାଠାରୁ ଅଧିକ ଉତ୍ତାପ ପୃଥିବୀରେ ଆଜିପର୍ଯ୍ୟନ୍ତ ସମ୍ଭବପର ହୋଇନାହିଁ ।

### ବାପ୍‌ରେ ସ୍ମୃତି ଶକ୍ତି !

ବିଜିଂ (ପେକିଙ୍ଗ୍‌) ରେ କାମ କରୁଥିବା ଛବିଶ ବର୍ଷ ବୟସ୍କା ଟେଲିଫୋନ୍ ଅପାରେଟର୍‌ କୁମାରୀ ଗାଉ ୟ୍ୟାନ୍‌ଲିଂ ଦଶଟି ସହରର ପନ୍ଦର ହଜାର ଟେଲିଫୋନ୍ ନମ୍ବର ଓ ସେମାନଙ୍କ ମାଲିକମାନଙ୍କ ନାମ ମନେ ରଖିଛନ୍ତି । ସେ ଶ୍ରୋତାମାନଙ୍କ ଆଗରେ ଅବଲୀଳା କ୍ରମେ ସେସବୁ କହିଯାଇ ପାରନ୍ତି ।





### ଅପୂର୍ବ ମୋଟର ସାଇକଲ

ଦିଲ୍ଲୀର ଛାତ୍ର ସନ୍ଦୀପ କୁମାର ଗୁପ୍ତ ତାଙ୍କ ମୋଟର ସାଇକଲ ଦେହରେ ଗୋଟିଆ ରେଫ୍ରିଜରେଟର୍‌, ଗୋଟିଆ ଟିଭି, ଷ୍ଟେରିଓ ଟେପ୍‌ରେକର୍ଡର, ଏପରିକି ତାରହୀନ ଟେଲିଫୋନ୍ ମଧ୍ୟ ଯୋଡିଛନ୍ତି !

# ସତ୍ୟତାପସ

କୋଶଳ ନିବାସୀ ବ୍ରାହ୍ମଣ ଦେବଦତ୍ତ ସନ୍ତାନ ଲାଭ ପାଇଁ ଯଜ୍ଞ କଲେ । ତାଙ୍କ ପୁରୋହିତ ଭୁଲ ଭାବରେ ବେଦର ଶ୍ଳୋକ ଆବୃତ୍ତି କରୁଥିଲେ । ଦେବଦତ୍ତ ତାଙ୍କ ଭୁଲ ଦେଖାଇ ଦେବାରୁ ପୁରୋହିତ ଭୀଷଣ ରାଗିଗଲେ । ସେ ଅଭିଶାପ ଦେଇ କହିଲେ, "ଯଜ୍ଞ ଫଳରେ ତମର ପୁଅ ହେବ ସତ, କିନ୍ତୁ ସେ ପୁଅର ସ୍ୱଭାବ ଉଦ୍ଧତ ହେବ । ସେ ପାଠଶାଠ ପଢ଼ିବାରେ ମନ ଦେବ ନାହିଁ ।"

ଦେବଦତ୍ତ କ୍ଷମା ମାଗିଲେ । ପୁରୋହିତ କହିଲେ, "ଠିକ୍ ଅଛି । ପୁଅ ସିନା ବିଦ୍ୱାନ୍ ହେବ ନାହିଁ, କିନ୍ତୁ ସେ ଋଷି ହେବ ।"

ଯଥା ସମୟରେ ଦେବଦତ୍ତଙ୍କର ପୁଅଟିଏ ହେଲା । ତାକୁ ଦେବଦତ୍ତ ଗୁରୁକୁଳରେ ଛାଡ଼ିଲେ ଯେ ସେ ପାଠ ପଢ଼ିଲା ନାହିଁ । ଗୁରୁ ବିରକ୍ତ ହେଲେ; ସହପାଠୀମାନେ ଥଟ୍ଟା କଲେ ।

ପିଲା ଗୁରୁକୁଳରୁ ଯାଇ ଗଙ୍ଗା କୂଳରେ କୁଡ଼ିଆଟିଏ କରି ରହିଲା । ସେ ନିୟମିତ ଧ୍ୟାନ କରୁଥାଏ; ଗଭୀର ଭକ୍ତିରେ ଗଙ୍ଗାସ୍ନାନ କରୁଥାଏ । ସବୁଠାରୁ ଯାହା ବଡ଼ କଥା, ସେ କେବେ ବି ମିଛ କହୁ ନଥାଏ । ଅନ୍ୟ ଋଷିମାନେ ତା'ର ନାମ ରଖିଲେ ସତ୍ୟତାପସ ।

କ୍ରମେ ସତ୍ୟତାପସ ଋଷି ହିସାବରେ ଜଣାଶୁଣା ହେଲେ । ଦିନେ ଜଣେ ଶିକାରୀ ଗୋଟିଏ ବାର୍ହାକୁ ଗୋଡ଼ାଇଲା । ବାର୍ହା ଆସି ସତ୍ୟତାପସଙ୍କ କୁଡ଼ିଆରେ ଆଶ୍ରା ନେଲା । ଶିକାରୀ ଆସି ବାର୍ହା ସେଠି ଅଛି କି ବୋଲି ଋଷିଙ୍କୁ ପଚାରିଲା ।

ଋଷି ତ ମିଛ କହନ୍ତି ନାହିଁ । ଅଥଚ ବାର୍ହା ମରୁ ବୋଲି ମଧ୍ୟ ସେ ଚାହୁଁ ନଥିଲେ । କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ତାଙ୍କ ମୁହଁରୁ ମର୍ମସ୍ପର୍ଶୀ ଶ୍ଳୋକଟିଏ ବାହାରିଗଲା । ତା'ର ପ୍ରଭାବ ଏଡ଼େ ତୀବ୍ର ହେଲା ଯେ ଶିକାରୀ ତାଙ୍କୁ ପ୍ରଣାମ କରି ଚାଲିଗଲା ଓ ଶିକାର ଛାଡ଼ିଦେଲା ।

ଋଷି ସତ୍ୟତାପସ କବି ଭାବରେ ଖ୍ୟାତି ଲଭିଲେ ।





# ରାଜାଙ୍କ ସନ୍ଧାନ

ଶ୍ରୀପୁରର ରାଜା ବିଜୟବର୍ମାଙ୍କର ଅନୁସନ୍ଧାନର ଶେଷ ନଥିଲା । ସେ ସବୁ ବିଷୟରେ ଯେତେ ଅଧିକ ସମ୍ଭବ ଜାଣିବାକୁ ଖୁବ୍ ଚେଷ୍ଟା କରୁଥିଲେ । ବିଶେଷ କରି ମନୁଷ୍ୟ ପ୍ରକୃତି ସମ୍ପର୍କରେ ତାଙ୍କର ଅତ୍ୟନ୍ତ କୌତୁହଳ ଥିଲା ।

ସେ ଅନେକ ସମୟରେ ତାଙ୍କ ପାରିଷଦମାନଙ୍କୁ ଜଟିଳ ପ୍ରଶ୍ନମାନ ପଚାରି ଦେଉଥାନ୍ତି । ସେମାନଙ୍କ ଉତ୍ତର ଅବଶ୍ୟ ତାଙ୍କୁ ବିଶେଷ ସନ୍ତୋଷ ଦେଇପାରୁ ନଥାଏ । ତଥାପି ସେ କିଛି ଚିନ୍ତାର ଖୋରାକ ପାଉଥାନ୍ତି । ଏକମାତ୍ର ରାଣୀ ଥିଲେ ଜ୍ଞାନୀ ଓ ବିଦୁଷୀ । ସେ ସର୍ବଦା ତାଙ୍କ ପ୍ରଶ୍ନର ଉଚିତ ଉତ୍ତର ଦେଇଥିଲେ ।

ଦିନେ ସେ ବଗିଚାରେ ତାଙ୍କର କେତେଜଣ ଅମାତ୍ୟଙ୍କ ସାଙ୍ଗରେ ପଦଚାରଣା କରୁଥିଲେ । ସେ ଆଗେ ଆଗେ ଚିନ୍ତାମଗ୍ନ ହୋଇ ଚାଲିଥାନ୍ତି । ପଛେ ପଛେ ଚାଲିଥାନ୍ତି ଅମାତ୍ୟମାନେ ।

ଜଣେ ଅମାତ୍ୟ କଣ୍ଠସ୍ୱର ନମ୍ର କରି ଆଉ ଜଣେ ଅମାତ୍ୟଙ୍କୁ କହୁଥାଏ, "ଆମ ରାଜାଙ୍କ ଭଳି ଭଲ ମଣିଷ ଏ ଜଗତରେ ଦ୍ୱିତୀୟ ନଥିବେ ।"

"ଏଥିରେ ଆଉ ସନ୍ଦେହ ଅଛି ?" ଦ୍ୱିତୀୟ ଅମାତ୍ୟ କହିଲେ । ସେମାନେ ଏପରି କଥା ରାଜାଙ୍କୁ ଶୁଣାଇ କହୁଥିଲେ, କିନ୍ତୁ ସତରେ ଯେମିତି ଖାଲି ନିଜ ନିଜ ଭିତରେ କଥା ହେଉଛନ୍ତି, ସେମିତି ଭାବ ଦେଖାଉଥିଲେ ।

ହଠାତ୍ ରାଜା ବୁଲିପଡ଼ି ସେ ଦୁହିଁଙ୍କୁ ପଚାରିଲେ, "ତମେମାନେ ମୋତେ ଭଲ ମଣିଷ ବୋଲି କାହିଁକି କହୁଛ ?"

ଅମାତ୍ୟ ଦୁଇଜଣଙ୍କ ପାଟି ଅଠା ଅପ ହୋଇଗଲା । "ମଣିମା! ଆପଣ ଶତ୍ରୁଙ୍କୁ



କେତେ ପ୍ରକାରେ ସାହାଯ୍ୟ ଦିଅନ୍ତି!" ଜଣେ କହିଲା।

"ମୋର ଟଙ୍କା ପଇସା ଓ ସାହାଯ୍ୟ କରିବାର ସବୁ ପ୍ରକାର ସାମର୍ଥ୍ୟ ଅଛି ବୋଲି ମୁଁ ସାହାଯ୍ୟ ଦିଏଁ। ତା'ଛଡ଼ା ରାଜା ହିସାବରେ ଲୋକଙ୍କ ଦୁଃଖ ବୁଝିବା ହେଲା ମୋର କାମ। ସେଥିପାଇଁ ମୋତେ ଭଲ ମଣିଷ କହିବାର ମାନେ ନାହିଁ।" ରାଜା କହିଲେ।

"ମଣିମା! ଆପଣ ଆପଣଙ୍କ ଉଚ୍ଚ ପଦ ଯୋଗୁଁ ଗର୍ବ କରନ୍ତି ନାହିଁ କି ସାଧାରଣ ଲୋକଙ୍କୁ ନ୍ୟୂନ ଆଖିରେ ଦେଖନ୍ତି ନାହିଁ।" ଦ୍ୱିତୀୟ ଅମାତ୍ୟ କହିଲେ।

"ଦେଖ ବାବୁ, ଗର୍ବ କରିବା ବା ଅନ୍ୟଙ୍କୁ ହେୟଜ୍ଞାନ କରିବା ଖରାପ ଗୁଣ ନିଶ୍ଚୟ; କିନ୍ତୁ ସେସବୁ ନ କରିବା ଯେ ଭଲ ଗୁଣ, ସେପରି କଥା ନୁହେଁ। ସେସବୁ ନ କରିବା ମଣିଷର ସ୍ୱାଭାବିକ ଗୁଣ ବୋଲି ଧରା ହେବା ଉଚିତ। ଭଲ ଗୁଣ ଭିନ୍ନ ଜିନିଷ। ବୁଝିଲ? ମୁଁ ରଜା ଘରେ ଜନ୍ମ ହେଲି ବୋଲି ରଜା ହେଲି। ଜଣେ କୃଷକ ଘରେ ଜନ୍ମ ହୋଇଥିଲେ କୃଷକ ହୋଇଥାନ୍ତି। ରାଜା ଘରେ ଜନ୍ମ ହେବାରେ ମୋର ବାହାଦୁରି କେଉଁଠି? ସେପାଇଁ ଗର୍ବ କରିବାର ଅଛି କ'ଣ? ଅନ୍ୟଙ୍କୁ ନ୍ୟୂନ ଆଖିରେ ବା କାହିଁକି ଦେଖିବି? ସମସ୍ତେ ତ ମଣିଷ!" ରାଜା କହିଲେ।

ରାଜାଙ୍କର ଏ ମନ୍ତବ୍ୟ ଉପରେ ଅମାତ୍ୟମାନେ କିଛି କହି ପାରିଲେ ନାହିଁ।

ରାଜା ସେମାନଙ୍କୁ ସିନା ଆଉ ଜେରା କଲେ ନାହିଁ, କିନ୍ତୁ ଭଲ ମଣିଷ କିଏ, ସେ ପ୍ରଶ୍ନ ଉପରେ ନିଜେ ଏତେ ଭାବିହେଲେ ଯେ ରାତିରେ ତାଙ୍କୁ ନିଦ ଆସିଲା ନାହିଁ।

"କଥା କ'ଣ?" ରାଣୀ ପଚାରିଲେ।

"ଭଲ ମଣିଷ କିଏ, ସେହିକଥା ଭାବୁଛି।" ରାଜା ଉତ୍ତର ଦେଲେ।

"କୌଣସି ଗୋଟାଏ ମାପ କାଠିରେ ସମସ୍ତଙ୍କୁ ମପାଯାଇ ପାରିବ ନାହିଁ! ତେବେ କିଏ କେତେ ଭଲ ବା ମନ୍ଦ ସେକଥା ଜଣଙ୍କୁ ତା' ସ୍ୱାଭାବିକ ପରିବେଶରେ ଲକ୍ଷ୍ୟ



କଲେ କଷ୍ଟ ମାହାରେ ବୃଦ୍ଧି ହେବ।" ରାଣୀ କହିଲେ।

"ସ୍ୱାଭାବିକ ପରିବେଶ ବୋଇଲେ?" ରାଜା ପଚାରିଲେ।

"ଧର ତମ ଅମାତ୍ୟମାନଙ୍କ କଥା। ସେମାନେ ଯେତେବେଳେ ଦରବାରକୁ ଆସୁଛନ୍ତି, ସେତେବେଳେ ଗାମ୍ଭୀର୍ଯ୍ୟ ଅବଲମ୍ବନ କରୁଛନ୍ତି। ଭଦ୍ର ଆଚରଣ କରୁଛନ୍ତି। କିନ୍ତୁ ନିଜ ଘରେ କିପରି ବ୍ୟବହାର କରୁଛନ୍ତି, ସେଇଟା ଦେଖିବା କଥା।" ରାଣୀ କହିଲେ।

ରାଜାଙ୍କ ମନକୁ ଏକଥା ପାଇଲା। ପରଦିନ ସନ୍ଧ୍ୟାବେଳେ ସେ ଓ ତାଙ୍କ ମନ୍ତ୍ରୀ ଛଦ୍ମବେଶ ପକାଇ ବାହାରିଗଲେ। ପ୍ରଥମେ ସେ ଦୁହେଁ ରାଜକବିଙ୍କ ଘର ପାଖରେ ପହଞ୍ଚି ଝରକା ଦେଇ ଭିତରକୁ ଅନାଇଲେ।

ରାଜକବିଙ୍କର ଜଣେ ଶିଷ୍ୟ ଥିଲେ। ଶିଷ୍ୟ ପ୍ରକୃତରେ ଅତି ଉଚ୍ଚକୋଟିର କବି। ସେତେବେଳେ ଶିଷ୍ୟ ଗୁରୁଙ୍କୁ ଖାଦ୍ୟ ପରଶୁଥିଲେ।

ରାଜା ସେ ଶିଷ୍ୟର ଆଚରଣ ଦେଖି ମୁଗ୍ଧ ହେଲେ। କାରଣ ବାସ୍ତବିକ କବି ହିସାବରେ ସେ ଶିଷ୍ୟ ଜଣକ ରାଜକବିଙ୍କ ତୁଳନାରେ ଅଧିକ ପ୍ରତିଭାବାନ। ରାଜକବି ଅବଶ୍ୟ ଶିଷ୍ୟଙ୍କ ପ୍ରତିଭା ବିଷୟରେ ରାଜାଙ୍କୁ କେବେ କୌଣସି ସୂଚନା ଦେଇ ନଥିଲେ, କିନ୍ତୁ ଜଣେ ଦୁଇଜଣ କାବ୍ୟ ପ୍ରେମୀ ଅମାତ୍ୟ ସେ ଶିଷ୍ୟଙ୍କ ଲେଖା କବିତା ନେଇ ରାଜାଙ୍କୁ ପଢ଼ି ଶୁଣାଇଥିଲେ!

ହଠାତ୍ ରାଜକବି ଉତ୍ତ୍ୟକ୍ତ ହୋଇ କହିଲେ, "ହଇରେ ଓଲୁ! ଥାଳି ଆଣି ଥୋଇଛୁ ଯେ ସେଥିରେ ପାଣି ବୁନ୍ଦା ବୁନ୍ଦା ଲାଗିଛି! ତୋ କବିତାକୁ କେତେଜଣ ପ୍ରଶଂସା କରିଦେଲେ ଓ ଆଉ କେଇଜଣ ମୂଢ଼ ତୁ ମୋଠୁଁ ଭଲ ଲେଖୁଛୁ ବୋଲି କହିଦେଲେ ବୋଲି ତୋ ବେକ ବଢ଼ି ଯାଇଛି ଦେଖୁଛି!"

ଶିଷ୍ୟ ନମ୍ର ଭାବରେ ଥାଳିଆ ପୋଛିଦେଲା।

ସେତିକିବେଳେ ରାଜ-କବିଙ୍କ ଅସୁସ୍ଥ ସ୍ତ୍ରୀ ଯନ୍ତ୍ରଣା ଯୋଗୁଁ ଆଃ ବୋଲି କହିଲେ।



"କାହିଁକି ପାଟି କରୁଛୁ? ଚାରିଦିନ ଜ୍ୱରରେ ଅବସ୍ଥା ଏମିତି ହୋଇଗଲା ଯେ ଉଠିବାକୁ ବଳ ନାହିଁ? ତମ ଭଳି ଅଯୋଗ୍ୟ ସ୍ତ୍ରୀକୁ ବାହା ହୋଇ କି ଭୁଲ କରିଛି!" ରାଜକବି ଧମକି ଦେଲେ।

ରାଜା ଓ ମନ୍ତ୍ରୀ ଝରକା ପାଖରୁ ଚାଲିଗଲେ। ରାଜା କହିଲେ, "ବାପ୍‌ରେ କବିଙ୍କ ତେଜ! ଦରବାରରେ କେଡ଼େ ଭଦ୍ର ଦିଶନ୍ତି।"

ସେ ଦୁହେଁ ସେଠାରୁ ଯାଇ ରାଜବୈଦ୍ୟଙ୍କ ଘର ପାଖରେ ପହଞ୍ଚିଲେ। ସେମାନେ କାନ ଡେରି ଶୁଣିଲେ, ରାଜବୈଦ୍ୟ ତାଙ୍କ ପୁଅକୁ କହୁଛନ୍ତି, "ଶୁଣ। ତୁ ଶ୍ୱାସରୋଗର ଅବ୍ୟର୍ଥ ଔଷଧ ବାହାର କରିଛୁ, ଏକଥା ଆମ ରାଜାଙ୍କୁ ଶୁଣାଇବା ଦରକାର ନାହିଁ। ଆମକୁ ସେଥିରୁ ଅଧିକା କଣ ମିଳିବ? ଆମ ପଡ଼ୋଶୀ ରାଜ୍ୟର ରାଜବୈଦ୍ୟ ଆମଠୁଁ ସେ ଔଷଧ ପ୍ରସ୍ତୁତ ପଦ୍ଧତି ଏକ ହଜାର ସ୍ୱର୍ଣ୍ଣମୁଦ୍ରା ଦେଇ କିଣି ନେବାର ପ୍ରସ୍ତାବ ଦେଇଛନ୍ତି। ଆମେ ଦର ଦସ୍ତୁର କଲେ ଆହୁରି ଶହେ ଦୁଇଶହ ଅଧିକା ଦେବେ।

"ବାପା! ଆମ ରଜା ତ ବର୍ଷ ବର୍ଷ ଧରି ଏ ଦିଗରେ ଗବେଷଣା ପାଇଁ ଆମକୁ ଅର୍ଥ ଯୋଗାଇ ଆସିଛନ୍ତି। ପଡ଼ୋଶୀ ରାଜ୍ୟକୁ ଗବେଷଣାର ଫଳ ବିକିଦେବା ରାଜଦ୍ରୋହ ହେବ ନାହିଁ?"

"ତୁ ନିପଟ ବୁଦ୍ଧୁ!" ରାଜବୈଦ୍ୟ ବିରକ୍ତ ହୋଇ କହିଲେ। "ତୁ ଜୀବନରେ ଉନ୍ନତି କରି ପାରିବୁ ନାହିଁ।"

ରାଜା ଆଶ୍ଚର୍ଯ୍ୟ ହେଲେ। ମନ୍ତ୍ରୀ ଖାଲି ହସିଲେ। ଦୁହେଁ ସହର ବାହାରକୁ ଯାଇ ଗୋଟିଏ ଚଷା ଘର ପାଖରେ ପହଞ୍ଚିଲେ। ଚଷା କ୍ଲାନ୍ତ ହୋଇ ନିଜ ଝୋଟିଆ ଘର ଭିତରେ ପଶିଲା। ରାଜା ଓ ମଂତ୍ରୀ ଅନ୍ଧାର ଭିତରୁ ଝରକା ଭିତରକୁ ଅନାଇ ଲକ୍ଷ୍ୟ କଲେ, ତା' ସ୍ତ୍ରୀ ଖଟିଆରେ ପଡ଼ିଛି।

"କଣ ହେଲା?" ଚଷା ପଚାରିଲା।

"କୂଅରୁ ପାଣି କାଢ଼ିବା ବେଳେ ଗୋଡ଼ ଖସି ପଡ଼ିଗଲି। ଡାହାଣ ବାହୁ ଫୁଲି ଯାଇଛି। ଆଜି ରୋଷେଇ କରିପାରି ନାହିଁ। ମାଠିଆ ବି ଭାଙ୍ଗିଗଲା।" ସ୍ତ୍ରୀ କହିଲା।

"ମାଠିଆ କ'ଣ ନ ଭାଙ୍ଗି ସବୁଦିନେ ରହନ୍ତା? ତମକୁ କଷ୍ଟ ହେଉଛି? ମୁଁ ପାଣି ଗରମ କରୁଛି। ଗରମ ପାଣି ସେକ ଦେଲେ ଯନ୍ତ୍ରଣାର ଉପଶମ ହେବ। ରୋଷେଇ ହୋଇନାହିଁ ତ କ'ଣ ହେଲା? ମୋତେ କ'ଣ ରୋଷେଇ କରି ଆସେ ନାହିଁ? ଦେଖି ଆଜି ମୁଁ ରାନ୍ଧି ପାରୁଛି କି ନାହିଁ।" ଏହା କହି ଚଷା ଚୁଲି ଲଗାଇଲା ଓ ପାଣି ଗରମ କଲା।

"ତମର ଆଜି ଏଡ଼େ ଉଚ୍ଛୁର ହେଲା କାହିଁକି?" ତା' ସ୍ତ୍ରୀ ପଚାରିଲା।

"ଆଜି ମୋଠୁଁ ବିହନ କିଣିବା ପାଇଁ ମହାଜନ ଆସିବା କଥା ଥିଲା। ସେ ଆସିବାକୁ ଡେରି କଲା। ପଡ଼ୋଶୀ ରାଜ୍ୟର ମହାଜନ ଆସି ଅଧିକା ଦାମ ଦେଇ ମୋ ବିହନତକ କିଣିନେବାକୁ ଇଶର କଲା। ମୁଁ ଦେଲି ନାହିଁ। ସେ ଫେରିଗଲା ପରେ ଆମ ମହାଜନ ଆସି ପହଞ୍ଚିଲା ଓ କିଣିନେଲା।" ଚଷା କହିଲା।

"ଅଧିକା ଦାମରେ ଦେଲ ନାହିଁ କାହିଁକି?" ତା' ସ୍ତ୍ରୀ ପଚାରିଲା।

"ସେ ପଡ଼ୋଶୀ ରାଜ୍ୟର ମହାଜନ ଜାଣେ ଯେ ଶୀଘ୍ର ଆମ ରାଜ୍ୟରେ ବିହନ ଅଭାବ ପଡିବ। ସେ ବହୁତ ଚଡ଼ା ଦାମରେ ଆଣି ଆମର ଲୋକଙ୍କୁ ବିକିବ। ସେଥିପାଇଁ ଦେଲି ନାହିଁ।" ଚଷା କହିଲା।

ରାଜା ମଂତ୍ରୀଙ୍କୁ କହିଲେ, "ଚାଲ। ଗୋଟିଏ ସନ୍ଧ୍ୟାରେ ଆମେ ତିନିଜଣ ଭଲ ମଣିଷ ଭେଟିଲୁ। ଏହା କ'ଣ କମ କଥା? କବିଙ୍କ ଶିଷ୍ୟ ଖାଲି ଉତ୍ତମ କବି ନୁହେଁ, ନମ୍ର ମଣିଷ। ବୈଦ୍ୟଙ୍କ ପୁଅ ଦେଶପ୍ରେମୀ ଓ ବିଶ୍ୱାସ ଯୋଗ୍ୟ। ଏ ଚଷା ପୁଅଟି ନିର୍ଲୋଭୀ ଓ ଦେଶପ୍ରେମୀ।"

ରାଜା ପରଦିନ ରାଜକବିଙ୍କ ଶିଷ୍ୟକୁ ଓ ରାଜବୈଦ୍ୟଙ୍କ ପୁଅକୁ ଯଥା କ୍ରମେ ନୂତନ ରାଜକବି ଓ ରାଜବୈଦ୍ୟ ରୂପେ ନିଯୁକ୍ତ ଦେଲେ। ସେ ଚଷାକୁ ବେଶ୍ ଭଲ ଜମି କିଛି ଦାନ କଲେ।





# ପଣ୍ଡିତ ଓ ହୁଣ୍ଡା

ହରିପୁର ଗାଁର ଜମିଦାର ରାମଶଙ୍କରବାବୁଙ୍କ ଘରେ ଅତିଥି ହୋଇଥାନ୍ତି ପଣ୍ଡିତ ପ୍ରଭାକର ମିଶ୍ର। ମିଶ୍ରେ ଶାସ୍ତ୍ର ଓ ଧର୍ମତତ୍ତ୍ୱ ଉପରେ ସୁନ୍ଦର ବକ୍ତୃତା ଦେଇ ପାରୁଥାନ୍ତି। ଗାଁ ଲୋକେ ତାଙ୍କୁ ମନ୍ଦିର ପ୍ରାଙ୍ଗଣରେ ବକ୍ତୃତା ଦେବାକୁ ଅନୁରୋଧ କରିବାରୁ ସେ ରାଜି ହେଲେ।

ସେ ଦୀର୍ଘ ସମୟ ବକ୍ତୃତା ଦେବା ଅବସରରେ ନାନା ନୀତିକଥା କହିଲେ। ତେବେ ସେ ଦୁଇଟି କଥା ଉପରେ ବିଶେଷ ଜୋର ଦେଲେ : ଅନ୍ୟାୟ ଅନାଚାର କରୁଥିବା ଲୋକକୁ ସେଭଳି କାମରେ ଯିଏ ସାହାଯ୍ୟ କରେ, ସେ ନିଜେ କୌଣସି ଲାଭ ନ କରୁଥିଲେ ମଧ୍ୟ ଅନ୍ୟାୟ କରୁଛି ବୋଲି ବୁଝିବାକୁ ହେବ ସେଇଟା ମଧ୍ୟ ପାପ ଓ କୌଣସି ଲୋକ ସେପରି କରିବା ଉଚିତ୍ ନୁହେଁ। ଦ୍ୱିତୀୟ କଥା ହେଲା, କୌଣସି ପରିସ୍ଥିତିରେ ମିଛ କହିବା ସଙ୍ଗତ ନୁହେଁ।

ଲୋକେ ମୁଗ୍ଧ ହୋଇ ତାଙ୍କ ବକ୍ତୃତା ଶୁଣିଲେ। ସଭା ଶେଷରେ ପଣ୍ଡିତେ ଜମିଦାରଙ୍କ ଘରକୁ ଫେରୁଛନ୍ତି, ସେ ଗାଁର ଗୋଟାଏ ଟୋକା ଆସି ତାଙ୍କୁ ଜୁହାର ହୋଇ କହିଲା, "ପଣ୍ଡିତେ! ଆପଣ ଖୁବ୍ ଭଲ କଥାମାନ କହିଲେ। ମୁଁ ଏଣିକି ଆପଣଙ୍କ ଉପଦେଶ ଅକ୍ଷରେ ଅକ୍ଷରେ ମାନିବି!"

"ବେଶ୍, ଭଲ କଥା। ମୁଁ ଆଶୀର୍ବାଦ କରୁଛି, ତମେ ସଫଳ ହୁଅ।" ପଣ୍ଡିତେ ଏହା କହି ଜମିଦାରଙ୍କ ମୁହଁକୁ ଅନାଇ ସନ୍ତୋଷର ହସ ହସିଲେ। ଜମିଦାର କିଛି କହିଲେ ନାହିଁ।

ଖାଇ ବସିଲା ବେଳେ ପଣ୍ଡିତେ କହିଲେ, "ବୁଝିଲ ହରିଶଙ୍କର! ଅନ୍ତତଃ ଗୋଟାଏ

ମଥୁରାନନ୍ଦ

ଯୁବକ ତ ନ୍ୟାୟ ଓ ସତ୍ୟମାର୍ଗରେ ଚାଲିବାକୁ ଉଦ୍‌ବୁଦ୍ଧ ହେଲା !”

“ଓଃ, ସେ ଭୀମା କଥା କହୁଛ ? ସେଇଟା ଦୁଷ୍ଟ। ତମ କଥା ମାନିବାକୁ ଯାଇ ଅନ୍ୟ କିଛି ନୂଆ ସମସ୍ୟା ସୃଷ୍ଟି ନ କଲେ ହେଲା !” ଜମିଦାର କହିଲେ ।

ପଣ୍ଡିତେ ହସି ହସି ଉତ୍ତର ଦେଲେ, “ନୂଆ ସମସ୍ୟା ସୃଷ୍ଟି କଲେ ତା’ର ସମାଧାନ ବି ଶାସ୍ତ୍ରରେ ଥିବ !”

“ମିତ୍ରେ, ଶାସ୍ତ୍ର ଜ୍ଞାନ ସହ ସାଧାରଣ ବ୍ୟାବହାରିକ ଜ୍ଞାନ ମିଶିବା ଦରକାର । ନହେଲେ ବିଭ୍ରାଟ ହେବ ।” ଜମିଦାର କହିଲେ । ପଣ୍ଡିତେ ବୋଧହୁଏ ତାଙ୍କ ସହ ଏକମତ ହେଲେ ନାହିଁ । ସେ ଚୁପ୍ ରହିଲେ ।



ଘେର ପଣ୍ଡିତେ ଘରୁ ବାହାରିଛନ୍ତି, ଭୀମା ଆସି ପହଞ୍ଚିଗଲା । “ହେ ପଣ୍ଡିତେ ! ମୁଁ ତମକଥା ମାନିବାକୁ ଯାଇ ସମସ୍ୟାରେ ପଡିଛି । କ’ଣ କରିବି କୁହ । କାଲି ସଞ୍ଜରେ ଦୁଇଜଣ ଦୂର ଗାଁର ଲୋକ ମୋତେ ମଦ ଦୋକାନ କେଉଁଠି ବୋଲି ପଚାରିଲେ । ତାଙ୍କୁ ଯଦି ମଦ ଦୋକାନକୁ ବାଟ ବତାଇବି, ତେବେ ଅନାଚାରକୁ ସାହାଯ୍ୟ କରିବି । ଯଦି କହିବି ମୋତେ ଜଣା ନାହିଁ, ତେବେ ମିଛ କହିବା ହେବ ! ମୁଁ ସେଇଠୁ ଲୋକ ଦୁଇଟାଙ୍କୁ ଭିଡ଼ି ନେଇଯାଇ ମୋ ଘରେ ତାଲା ପକାଇ ରଖିଦେଲି । ବର୍ତ୍ତମାନ କୁହ କ’ଣ କରିବି ।”

“ତମେ ବାଟ ଜଣା ନାହିଁ ବୋଲି କହିଦେଲ ନାହିଁ ? ଏଭଳି କ୍ଷେତ୍ରରେ ମିଛ କହିବା କିଛି ଭୁଲ ନୁହେଁ ।” ପଣ୍ଡିତେ କହିଲେ ।

ଭୀମା ରାଗିଗଲା । ଚିତ୍କାର କରି କହିଲା, “କ’ଣ ହେଲା, ହଇଓ ପଣ୍ଡିତେ, ତମେ ହେଇ କେଇ ଘଣ୍ଟା ତଳେ କହିଲ କି ସବୁବେଳେ ସତ କହିବା ଦରକାର । ବର୍ତ୍ତମାନ କହୁଛ ଏଭଳି କ୍ଷେତ୍ରରେ ମିଛ କହିବା ଭୁଲ ନୁହେଁ । ଏଇ ତମ ଶାସ୍ତ୍ରର ନୀତି ? ଛିଃ ଏଭଳି ଶାସ୍ତ୍ର ପଢ଼ି ଲାଭ କ’ଣ ? ତୁମ ଶାସ୍ତ୍ରର ନୀତି ବାକ୍ୟ କାଲି ଶୁଣିଲି ଆଉ ସେଇଭଳି କାମ କଲି ଆଉ ମୁଁ ମହା

ଅଡୁଆରେ ପଡ଼ିଲି । ନିଜେ ରାତିଯାକ ଘାରୁଛି ଶୋଇ ନାହିଁ । ବିଚରା ସେଇ ଦୁଇଜଣ ବିଦେଶୀ ଲୋକ ମଧ୍ୟ ନଖାଇ ନପିଇ ବନ୍ଦୀ ହୋଇ ପଡ଼ିଛନ୍ତି ।”

ଗାଁ ଲୋକେ କ୍ଷେତକୁ ଯାଉଥିଲେ । ଭୀମାର ରଡ଼ି ଶୁଣି ଜମା ହୋଇଗଲେ । ପଣ୍ଡିତେ ମହା ସଙ୍କଟରେ ପଡ଼ିଲେ ।

ସେତିକିବେଳେ ଜମିଦାର ବାହାରି ଆସିବାରୁ ଭୀମା ଥଣ୍ଡା ପଡ଼ିଗଲା ଓ ତାଙ୍କୁ ଓଳଗି ହେଲା । ଜମିଦାର ସବୁ ଶୁଣି କହିଲେ, “ଭୀମା ! ତୁ ସେମାନଙ୍କୁ କହିଦେ କି ତୁ ମଦ ଦୋକାନକୁ ବାଟ ଜରୁର୍ ଜାଣୁ । କିନ୍ତୁ ତୁ ବାଟ ବତାଇବୁ ନାହିଁ । କାରଣ ମଦ ଖାଇବା ପାପ ତୁ ସେ ପାପରେ ଭାଗୀ ହେବୁନାହିଁ ହେଲା ? ବର୍ତ୍ତମାନ ଯା, ସେମାନଙ୍କୁ ଜଲଦି ତାଲା ଖୋଲି ଛାଡ଼ି ଦେ ।”

“ବାଃ, ସତକଥା ତ । ଏକଥା କହିଲେ ସତ୍ୟ କଥା ମଧ୍ୟ କହିବ ପାପରେ ମଧ୍ୟ ଭାଗୀ ହେବ ନାହିଁ । ମୋ ମୁଣ୍ଡକୁ ଏଇଟା କାହିଁକି ଗତକାଲି ରାତିରେ ଆସିଲା ନାହିଁ କେଜାଣି !” ଏହା କହି ଭୀମା ଦୌଡ଼ି ଦୌଡ଼ି ଚାଲିଗଲା । ଲୋକେ ବି ଯିଏ ଯା’ ବାଟରେ ଗଲେ ।

ପଣ୍ଡିତେ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, “ବୁଝିଲ ହରିଶଙ୍କର ! ତମ କଥା ଠିକ୍ । ସାଧାରଣ ବ୍ୟାବହାରିକ ଜ୍ଞାନ ନ ଥାଇ ନୀତିକୁ କାର୍ଯ୍ୟରେ ଲଗାଇଲେ ବିଷମ ସମସ୍ୟା ଉପୁଜିପାରେ ଏ ମୂର୍ଖ ଭୀମା ଯୋଗୁ ଗ୍ରାମର ସମସ୍ତ ଲୋକଙ୍କ ସମ୍ମୁଖରେ ମୋର ଇଜ୍ଜତ ଯାଇଥିଲା କୁହ । ତୁମେ ଆସି ବଞ୍ଚାଇଦେଲ । ରକ୍ଷା ହେଲା ।”

ଜମିଦାର ହସିଲେ ଓ କହିଲେ, “ଦେଖିଲ ତ ? ସେ ହୁଣ୍ଡା ଦୁଇଜଣ ଅଜଣା ଲୋକଙ୍କୁ ରାତିଯାକ ବନ୍ଦୀ କରି ରଖିଲାଣି । ସେ ଯେ କେତେ ବେଆଇନ କାମ କରୁଛି, ସେକଥା ତା’ ମୁଣ୍ଡକୁ ଆସିନାହିଁ ।”






[୧୧]

[ଚିତ୍ରସେନଙ୍କୁ ଯେତେବେଳେ ଖବର ମିଳିଲା କି ରାଜଦ୍ରୋହୀ ନାଗବର୍ମା ଦୁର୍ଗଆଡ଼େ ଝପଟି ଆସୁଛି, ସେ କ'ଣ କରିବେ, ସେହି ବିଚାର କଲେ । ରାକ୍ଷସ ଉଗ୍ରାକ୍ଷ ଓ ଅନ୍ୟମାନଙ୍କ ସହ ପରାମର୍ଶ କରି ସ୍ଥିର କରାଗଲା ଯେ ନାଗବର୍ମାକୁ ଦୁର୍ଗ ଭିତରକୁ ପଶି ଆସିବାକୁ ଦେବା ସୁବିଧା ହେବ । ନାଗବର୍ମା କିନ୍ତୁ ସେଠାରେ ପହଞ୍ଚି ଦୁର୍ଗ ଭିତରେ ପଶିବ କି ନାହିଁ ସେ ବିଷୟରେ ଦ୍ୱନ୍ଦରେ ପଡ଼ିଲା । ତା'ପରେ...]

ନାଗବର୍ମାର ସହକାରୀ କରବୀର ତାକୁ ପରାମର୍ଶ ଦେଲା କି ପ୍ରଥମେ ସେ ନିଜେ ଦୁର୍ଗରେ ନପଶି ତା'ର କେତେଜଣ ଅସୁରଙ୍କୁ ପଠାଇବା ଠିକ୍ ହେବ । ଦୁର୍ଗ ଭିତରେ କିଛି ବିପଦ ଥିଲେ, ସେକଥା ଜଣା ପଡ଼ିଯିବ ।

"କରବୀର! ତମ ପରାମର୍ଶ ଠିକ୍ । ମୁଁ ସେହି ଅନୁସାରେ କାମ କରିବି ।" ଏହା କହି ନାଗବର୍ମା ଘୋଡ଼ା ପଛକୁ ବୁଲାଇ ନିଜ ସୈନିକମାନଙ୍କୁ କହିଲା, "ଶୁଣ । ତମେମାନେ ନିର୍ଭୟରେ ଦୁର୍ଗ ଭିତରେ ପ୍ରବେଶ କର । ଆମର ସୌଭାଗ୍ୟ ଯେ ବିନା ଯୁଦ୍ଧରେ ଆମେ ଗୋଟାଏ ଦୁର୍ଗ ପାଇଯାଇଛୁ ! ଯୁଦ୍ଧରେ ଜୟ ପରାଜୟ ସବୁବେଳେ ଲାଗି ରହିଥାଏ । ଧବଳଗିରିରେ ଆମେ ପରାଜିତ ହୋଇଛୁଁ




ଠିକ୍ । କିନ୍ତୁ ତାହା ସାମୟିକ । ପୁଣି ଆମକୁ ସୁଯୋଗ ମିଳିବ ଓ ଆମେ ଧବଳଗିରି ଅଧିକାର କରିବୁଁ । ସେତେବେଳେ ତୁମ୍ଭମାନଙ୍କୁ ଯଥାର୍ଥ ଭାବରେ ପୁରସ୍କାର ମିଳିବ ।"

ତା' ଆଦେଶ ପାଇ ତା' ସୈନିକମାନେ ଦୁର୍ଗ ଭିତରେ ପ୍ରବେଶ କରିବାକୁ ଲାଗିଲେ । ସେମାନଙ୍କ ଭିତରୁ କେହି କେହି ଟିକିଏ ଦ୍ୱିଧା କରିବାର ଦେଖି ସେ ପୁଣି ଚିତ୍କାର କରି କହିଲା, "ବିଳମ୍ବ କର ନାହିଁ । ଶୀଘ୍ର ଶୀଘ୍ର ଭିତରେ ପଶିଯାଅ । ଦୁର୍ଗର ପ୍ରାଚୀରରେ ଅନେକ ସ୍ଥାନ ଭାଙ୍ଗିଯାଇଛି । ଆମକୁ ସେସବୁ ମରାମତି କରିବାକୁ ହେବ । ନହେଲେ ଆମେ ନିରାପଦ ହେବା କିପରି ? ଏସବୁ କାମ ତୁରନ୍ତ ନକଲେ ତାରକେଶ୍ୱରଙ୍କ ସୈନ୍ୟଦଳ ଆସି ପହଞ୍ଚିଯାଇ ଆମକୁ ହଇରାଣ କରିବେ ଯେ !"

ସେ ନିଜ ଘୋଡ଼ା ଏଆଡ଼େ ସେଆଡ଼େ ବୁଲାଇ ସବୁ ସୈନିକ ଏସବୁ ଯେପରି ଶୁଣି ପାରିବେ, ସେହି ଅନୁସାରେ ବଡ଼ ପାଟିରେ କହିଲା ।

ସବୁ ସୈନିକ ଦୁର୍ଗ ଭିତରେ ପ୍ରବେଶ କରିବା ପରେ ମଧ୍ୟ ନାଗବର୍ମା ଓ କରବୀର ବାହାରେ କିଛି ସମୟ ଅପେକ୍ଷା କରି ଅବସ୍ଥା ଲକ୍ଷ୍ୟ କଲେ । ନା, ଦୁର୍ଗ ଭିତରେ କୌଣସି ଗୋଳମାଳ ଶୁଣାଗଲା ନାହିଁ । ସେମାନେ ଆଶ୍ୱସ୍ତ ହେଲେ ।

ନାଗବର୍ମା କରବୀରକୁ କହିଲା, "ଆମେ ବୃଥାରେ ବିପଦର ଆଶଙ୍କା କରୁଥିଲୁଁ । ଅବଶ୍ୟ ସବୁବେଳେ ସତର୍କ ଭାବରେ କାମ କରିବା ଉଚିତ । ଚିନ୍ତା ନାହିଁ । ବର୍ତ୍ତମାନ ଭିତରକୁ ଯାଇ ଦୁର୍ଗକୁ ମଜବୁତ କରିବାକୁ ହେବ ।"

କରବୀର କହିଲା, "ହଁ । ସେଇଆ କରାଯାଉ ।" ଏହାପରେ ଦୁହେଁ ଦୁର୍ଗ ଭିତରେ ଠିକ୍ ପଶିବାକୁ ଯିବେ, ସେତିକି-ବେଳେ ଭିତରେ ଚିତ୍କାର ଶୁଭିଲା, "ରାକ୍ଷସ ! ରାକ୍ଷସ !!" ସେମାନଙ୍କର କେତେଜଣ ସୈନିକ ଭିତରୁ ବାହାରି ଆସିବାକୁ ଚେଷ୍ଟା କରୁଥିଲେ, "ମହାରାଜ ! ଆମକୁ ପ୍ରତାରିତ କରିବା




ନିମନ୍ତ୍ରେ ଭିତରେ ଶତ୍ରୁ ନିରବ ଥିଲା । ଉତ୍ତର କଲେ ଚଳିବ ନାହିଁ । ଚାଲନ୍ତୁ, ଏହି ମୁହୂର୍ତ୍ତରେ ପଳାଇବା ।" ଏହା କହି କରବୀର ନିଜ ଘୋଡ଼ା ବୁଲାଇଲା ।

"ସତେ ?" ଏହା କହି ନାଗବର୍ମା ବି ତା' ଘୋଡ଼ା ବୁଲାଇଲା ।

"ଆରେ, ଆରେ, ନାଗବର୍ମା ପଳାଉଛି ! ସେ ବଣରେ ପଶିବା ପୂର୍ବରୁ ତାକୁ ଧରି ପକାଇବା ଦରକାର ।" ଚନ୍ଦ୍ରସେନ ତାଙ୍କ ଲୋକଙ୍କୁ ଏକଥା କହୁଥିଲେ । ନାଗବର୍ମା ଏହା ଶୁଣି ପକାଇ ପ୍ରାଣମୂର୍ଚ୍ଛା ଘୋଡ଼ା ଛୁଟାଇଲା । ପଛରୁ ଶୁଭିଲା ରାକ୍ଷସମାନଙ୍କ ରଡ଼ି । ସଙ୍ଗେ ସଙ୍ଗେ କେତୋଟି ଗଦା ମଧ୍ୟ ସାଏଁ ସାଏଁ ତା' ମୁଣ୍ଡ ପାଖଦେଇ ଆଗକୁ ଯାଇ ପଡ଼ିଲା ।

ଭୟାର୍ତ୍ତ କଣ୍ଠରେ କରବୀର କହିଲା, "ମହାରାଜ ! ଆମକୁ ଜୀବନ୍ତ ଧରିବା ସେମାନଙ୍କ ଉଦ୍ଦେଶ୍ୟ । ଚାଲନ୍ତୁ, ଯେତେ ଶୀଘ୍ର ସମ୍ଭବ ଘୋଡ଼ା ଛୁଟାନ୍ତୁ । ନହେଲେ କଥା ସରିଲା ।"

ନାଗବର୍ମାକୁ କରବୀର ଏ ପରାମର୍ଶ ଦେବାର କୌଣସି ଆବଶ୍ୟକତା ନଥିଲା । ନାଗବର୍ମା ଯେତେ ଯୋରରେ ସମ୍ଭବ ନିଜ ଘୋଡ଼ା ଛୁଟାଉଥିଲା ।

ହଠାତ୍ ଉଗ୍ରାକ୍ଷର ଗୋଟାଏ ଗଦା ଆସି କରବୀରର ଘୋଡ଼ା ଦେହରେ ବାଜିଲା । ଘୋଡ଼ା ଭୀଷଣ ଆର୍ତ୍ତନାଦ କରି ତଳେ ପଡ଼ିଗଲା । ତା' ପିଠିରୁ ଛିଟିକି ପଡ଼ିଲା କରବୀର । ସେ କିଛି ଦୂର ଗଡ଼ି ଗଡ଼ି ଯାଇ ଅଟକି ଗଲା । ସେ କୌଣସି ମତେ ଉଠି ଠିଆ ହେବାକୁ ଚେଷ୍ଟା କରୁଥାଏ ।

ନାଗବର୍ମା ନିଜ ଘୋଡ଼ା ଅଟକାଇ କରବୀର ଆଡ଼େ ଅନାଇଲା । ସେତେବେଳକୁ ସେମାନଙ୍କର କିଛି ସୈନିକ ଆର୍ତ୍ତନାଦ କରି କରି କୌଣସି ମତେ ରାକ୍ଷସମାନଙ୍କ କବଳରୁ ପ୍ରାଣ ବଞ୍ଚାଇ ପଳାଇ ଆସୁଥିଲେ । କିନ୍ତୁ ଅଧିକାଂଶ ଦୁର୍ଗ ଭିତରେ ରହିଯାଇ ଥିବାଭଳି ମନେ ହେଉଥିଲା ।

"କରବୀର ! ଆମେ ଶତ୍ରୁ କବଳରୁ ଖସିଯାଇ ପାରିବା ତ ? ଭୀଷଣ ଧୋକାବାଜି



ଭିତରେ ପଡ଼ିଗଲୁଁ ଦେଖୁଛୁ । ତମ ଘୋଡ଼ା ପୁଣି ଦୌଡ଼ି ପାରିବଟି ? ତମେ ଆଘାତ ପାଇନାହଁ ତ ?" ନାଗବର୍ମା ପଚାରିଲା ।

"ମହାରାଜ ! ଶତ୍ରୁ ଆମକୁ ବଡ଼ ବିପଦରେ ପକାଇଲା । ବର୍ତ୍ତମାନ ପ୍ରାଣରକ୍ଷା କିପରି କରିବା, ତାହାହିଁ ସମସ୍ୟା ।" କରବୀର କହିଲା ।

"ଗୋଟାଏ କାମ କରାଯାଉ । କୌଣସି ମତେ ଶତ୍ରୁଙ୍କ ଦୃଷ୍ଟି ଅନ୍ୟ ଦିଗକୁ ବୁଲାଇ ଦେବାକୁ ପଡ଼ିବ ।" ଏହା କହି ନାଗବର୍ମା ନିଜ ପକ୍ଷର ଯେଉଁ ଦୁଇଜଣ ସୈନିକ ଦୌଡ଼ି ଦୌଡ଼ି ଆସି ସେଠି ପହଞ୍ଚି ଯାଇଥିଲେ, ସେ ଦୁହିଁଙ୍କୁ ଅଟକାଇ ନାଗବର୍ମା ନିଜ ଘୋଡ଼ାଟି ଓ ସଙ୍ଗେ ସଙ୍ଗେ ପାଖରେ ଥିବା ଅନ୍ୟ ଏକ ଘୋଡ଼ା ଦେଖି କହିଲା, "ତମେ ଦୁହେଁ ଦୌଡ଼ି ଦୌଡ଼ି ହାଲିଆ ହୋଇଗଲଣି । ନିଅ ଏ ଘୋଡ଼ା । ଘୋଡ଼ା ଚଢ଼ି ଏହି ଦିଗକୁ ପଳାଅ ।" ଏହା କହି ନାଗବର୍ମା ସେ ଦୁହିଙ୍କୁ ଗୋଟାଏ ଦିଗ ନିର୍ଦ୍ଦେଶ କରିଦେଲା ।

ସେମାନେ ତାହାହିଁ କଲେ । ନାଗବର୍ମା ଓ କରବୀର ଗୋଟିଏ ଶିଳା ଆଢୁଆଳରେ ଛପିଗଲେ । ପରେ ପରେ ସେମାନେ ରାକ୍ଷସ ଓ ଚନ୍ଦ୍ରସେନଙ୍କର କେତେକ ସୈନିକ କହୁଥିବାର ଶୁଣିଲେ, "ହେଇଟି, ନାଗବର୍ମା ଓ କରବୀର ଘୋଡ଼ା ଚଢ଼ି ପଳାଉଛନ୍ତି । ସେ ଦୁହିଙ୍କୁ ଧରିବା ଚାଲ ।"

"ନାଗବର୍ମାକୁ ଜୀବନ୍ତ ଧରିପାରିଲେ କ'ଣ ପୁରସ୍କାର ମିଳିବ ଜାଣିଛ ? ରାଜ୍ୟର ଗୋଟାଏ ଅଂଶ ।" ଆଉ ଜଣେ କହିଲା ।

କରବୀର ମୁହଁରେ ହସ ଫୁଟି ଉଠିଲା । ସେ ନାଗବର୍ମାକୁ କହିଲା, "ମହାରାଜ ! ଆମ ଚାଲ ଠିକ୍ କାମ ଦେଇଛି ।"

ନାଗବର୍ମା ମୁଣ୍ଡ ହଲାଇ ନିଜ ସନ୍ତୋଷ ପ୍ରକାଶ କଲା । ଦୁହେଁ ତା'ପରେ ଲୁଚି ଲୁଚି ଅନ୍ୟ ଦିଗରେ ଯାତ୍ରା କଲେ ।

ଦୁର୍ଗର ଫାଟକ ପାଖରେ ଠିଆ ହୋଇ ଚନ୍ଦ୍ରସେନ ଓ ଉଗ୍ରାକ୍ଷ ଆଗ୍ରହରେ ଅପେକ୍ଷା କରୁଥା'ନ୍ତି । ସେମାନଙ୍କ ଅନୁଚର ଓ ସୈନିକମାନେ ନାଗବର୍ମାକୁ ଧରିବାକୁ ସକ୍ଷମ




ହେବେ, ସେମାନଙ୍କର ଏହି ଆଶାଥାଏ । କିନ୍ତୁ ଦଳ ପରେ ଦଳ ସୈନିକ ଫେରିଆସି ହତାଶ ସ୍ୱରରେ କହୁଥାନ୍ତି, "ନା ଆଜ୍ଞା, ଆମେ ନାଗବର୍ମା କିମ୍ବା ତା' ସହକାରୀର କୌଣସି ସନ୍ଧାନ ପାଇଲୁଁ ନାହିଁ ।" ଏପରିକି ଯେଉଁ ସୈନିକମାନେ ନାଗବର୍ମା ଓ କରବୀର ଭ୍ରମରେ ନାଗବର୍ମାର ଦୁଇଜଣ ସୈନିକଙ୍କ ପଛେ ପଛେ ଘୋଡ଼ା ଛୁଟାଇଥିଲେ, ସେ ଦୁହେଁ ବି ଫେରି ଆସି କହିଲେ, "ମନେ ହୁଏ ନାଗବର୍ମା ଓ କରବୀର ଏ ଅଞ୍ଚଳର ଅଳିଗଳି ଭଲ ଭାବରେ ଜାଣନ୍ତି । କେଉଁଠାରେ ଲୁଚିଗଲେ କହିବା ଅସମ୍ଭବ । ସତେ ଅବା ଅଦୃଶ୍ୟ ହୋଇଗଲେ !"

ଚନ୍ଦ୍ରସେନ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, "ଦୁଷ୍ଟ ନାଗବର୍ମା ଆମ ହାତ ମୁଠା ଭିତରକୁ ଆସି ପୁଣି ଖସିଗଲା ! ହାୟ !"

ଉଗ୍ରାକ୍ଷ କହିଲା, "ମହାରାଜ, ଚିନ୍ତା କରନ୍ତୁ ନାହିଁ । ସେ ଦୁହିଁଙ୍କୁ ବନ୍ଦୀ କରିବାର ଦାୟିତ୍ୱ ମୋ ଉପରେ ଛାଡ଼ି ଦିଅନ୍ତୁ । ସେ ଦୁହେଁ ଯିବେ କୁଆଡ଼େ ? ଏହି ବଣ ଭିତରେହିଁ ଲୁଚି ଥିବେ । ସାରା ବଣ ଆମେ ତନ୍ନ ତନ୍ନ କରି ଖୋଜିବା । ସେମାନେ ନିଶ୍ଚେ ଧରା ପଡ଼ିବେ ।"

ଉଗ୍ରାକ୍ଷର ନିର୍ଦ୍ଦେଶରେ ତା' ଅନୁଚରମାନେ ପୁଣି ବଣରେ ଭିନ୍ନ ଭିନ୍ନ ଅଂଶକୁ ମାଡ଼ିଗଲେ ।

ଅଳ୍ପ ସମୟ ଭିତରେ ସେଠାରେ ଚନ୍ଦ୍ରସେନଙ୍କ ପିତା ମହାରାଜା ତାରକେଶ୍ୱର ଓ ଚନ୍ଦ୍ରସେନଙ୍କ ସେନାପତି ଅଜୟସିଂହ ଆସି ପହଞ୍ଚିଲେ । ଚନ୍ଦ୍ରସେନ ଯେ କପିଳପୁର ଦୁର୍ଗ ପୁନରଧିକାର କରିଛନ୍ତି, ଏହା ଜାଣି ତାରକେଶ୍ୱରଙ୍କ ଆନନ୍ଦର ସୀମା ରହିଲା ନାହିଁ । କିନ୍ତୁ ନରାଧମ ନାଗବର୍ମା ପଳାଇ ଯାଇଛି ଜାଣି ସେ ବହୁତ ଦୁଃଖିତ ହେଲେ । "ତାକୁ ଏତେଦୂର ଯାଏ ଅନୁଧାବନ କରି ଆସି ଶେଷକୁ ହତାଶ ହେବାକୁ ପଡ଼ିଲା !" ସେ କହିଲେ ।

ଚନ୍ଦ୍ରସେନ କହିଲେ, "ବାସ୍ତବିକ ଏହା ଦୁଃଖର ବିଷୟ ।"

ତାରକେଶ୍ୱର ପୁଣି କହିଲେ, "ନାଗବର୍ମା ଜୀବିତ ଥିବା ଯାଏ ଆମ ଉପରେ ବିପଦର ଆଶଙ୍କା ରହିଥିବ । ଅଗ୍ନିଦ୍ୱୀପରେ ଥିବା




ବ୍ୟାଘ୍ରଚର୍ମଧାରୀ ଲୋକଙ୍କ ସହ ତା'ର ବନ୍ଧୁତା ଅଛି । ସେମାନଙ୍କର ତଥା ଅତିଶୟ ପକ୍ଷୀଙ୍କ ସାହାଯ୍ୟରେ ସେ ଯେ କେତେବେଳେ ଆସି ଆମମାନଙ୍କ ଦୁର୍ଗ ଆକ୍ରମଣ କରିବ, ସେକଥା କହିବା ସହଜ ନୁହେଁ ।"

ସମସ୍ତେ ନୀରବ ରହିଲେ । ଉଗ୍ରାକ୍ଷ ପଠାଇଥିବା ରାକ୍ଷସମାନେ କୌଣସି ମତେ ନାଗବର୍ମାର ସନ୍ଧାନ ପାଇବେ, ସମସ୍ତଙ୍କ ମନରେ କ୍ଷୀଣ ଭାବରେ ଏହି ଆଶା ଥାଏ ।

କପିଳପୁର ରାଜା ବୀରସିଂହଙ୍କ ସହ ଚନ୍ଦ୍ରସେନ ନିଜ ପିତାଙ୍କ ପରିଚୟ କରାଇ ଦେଲେ । ବୀରସିଂହ ଖୁସି ହୋଇ ଚନ୍ଦ୍ରସେନଙ୍କ ଭୂୟସୀ ପ୍ରଶଂସା କରି କହିଲେ, "ମହାରାଜ ତାରକେଶ୍ୱର ! ଚନ୍ଦ୍ରସେନ ଆସି ନଥିଲେ ମୁଁ ବର୍ତ୍ତମାନ ଜୀବିତ ନଥାନ୍ତି । ମୋର ସନ୍ତାନ ସନ୍ତତି ବୋଇଲେ ଗୋଟିଏ କନ୍ୟା । ମହାରାଜ! ଆପଣଙ୍କ ବଂଶ ସହ ସମ୍ପର୍କ ସ୍ଥାପନ କରିବା ନିମନ୍ତେ ମୋର ବହୁଦିନରୁ ଆଗ୍ରହ ଥିଲା । ଆପଣଙ୍କର ଆପତ୍ତି ନଥିଲେ ମୋ କନ୍ୟା ସହ ଆପଣଙ୍କ ସୁଯୋଗ୍ୟ ପୁତ୍ରର ବିବାହ ଦେଇ ମୁଁ ରାଜକାର୍ଯ୍ୟରୁ ଅବ୍ୟାହତି ନେବି । ଆଶା କରେଁ ଆପଣ ମୋ ବାସନା ପୂର୍ଣ୍ଣ କରିବେ ।"

"ମହାରାଜ, ଆପଣଙ୍କ କନ୍ୟା କାନ୍ତିମତୀ ସମ୍ପର୍କରେ ମୁଁ ମୋ ଅନୁଚରମାନଙ୍କଠାରୁ ଯାହା ଶୁଣିଛି, ଆପଣଙ୍କ ବଂଶ ବିଷୟରେ ମୋର ଯେତିକି ଜ୍ଞାନ ଅଛି, ଆପଣଙ୍କ ସମ୍ପର୍କରେ ମୁଁ ଯାହା ଜାଣେ, ଆପଣଙ୍କ ସହ ବନ୍ଧୁତା କରି ମୁଁ ନିଜକୁ ଭାଗ୍ୟବାନ ମନେ କରିବି ।" ବୀରସିଂହ କହିଲେ ।

ଏହା ପରେ ଦୁଇ ବୃଦ୍ଧ ରାଜା ପରସ୍ପର ଉପରେ ଏତେ ଖୁସି ହୋଇଗଲେ ଯେ ଆଉ ସବୁ କଥା ଭୁଲି ଯାଇ ବିବାହ କିପରି ଭାବରେ ହେବ, କେବେ ହେବ, ଏହିସବୁ ଚର୍ଚ୍ଚା କରିବାକୁ ଲାଗିଲେ ।

ଉଗ୍ରାକ୍ଷ ସବୁ ଶୁଣୁଥିଲେ । ସେ ଚନ୍ଦ୍ରସେନଙ୍କ ପାଖକୁ ଯାଇ ନିଜ ହର୍ଷ ପ୍ରକାଶ କରିବାରୁ ଚନ୍ଦ୍ରସେନ କହିଲେ, "ରାକ୍ଷସ-ରାଜ ! ତମେ ମୋର ଯେଉଁଭଳି ଉପକାର କରିଛ, ସେ ଋଣ ମୁଁ କିପରି ପରିଶୋଧ କରିବି ଜାଣେନା ।

ମୋ ବିବାହ ଅବସରରେ ତମକୁ କୌଣସି ବିଶେଷ ପୁରସ୍କାର ଦେବି । କ'ଣ ପାଇଲେ ତମେ ଖୁସି ହେବ ?"

"ମହାରାଜ ଚନ୍ଦ୍ରସେନ! ଆପଣଙ୍କ ସହ ଯେଉଁଦିନ ମୋର ପ୍ରଥମେ ଦେଖା ହେଲା, ଆପଣଙ୍କୁ କ'ଣ ମାଗିଥିଲି ମନେ ଅଛି ? ଆପଣଙ୍କର ଜ୍ୟେଷ୍ଠପୁତ୍ର ଯେଉଁଦିନ ଅଷ୍ଟାଦଶ ବର୍ଷରେ ପଦାର୍ପଣ କରିବ, ସେହିଦିନ ଆପଣ ତାକୁ ମୋତେ ଦେଇଦେବେ, ଏହି କଥା ହୋଇଥିଲା ।" ଉଗ୍ରାକ୍ଷ କହିଲା ।

"ମୋର ତାହା ମନେ ଅଛି ।" ଚନ୍ଦ୍ରସେନ କହିଲେ ।

"ବେଶ୍ । ବର୍ତ୍ତମାନ ମୋର ସେ ମାଗୁଣିରେ କିଛି ପରିବର୍ତ୍ତନ କରିବାର ଅଛି । ଆପଣଙ୍କର ପ୍ରଥମ ସନ୍ତାନ ପୁଅ ହେଉ ବା ଝିଅ ହେଉ, ଆପଣ ତାକୁ ମୋତେ ଦେବେ । ଅଷ୍ଟାଦଶ ବର୍ଷ ଯାଏ ମୁଁ ଅପେକ୍ଷା କରିବି ନାହିଁ । ତାକୁ ପାଞ୍ଚବର୍ଷ ପୂରିଗଲେ ଆପଣ ତାକୁ ମୋତେ ଦେଇଦେବେ । ମୋର ଏହି ପୁରସ୍କାର ଲୋଡ଼ା । ଠିକ ତ ?" ଉଗ୍ରାକ୍ଷ ପଚାରିଲା ।

ଚନ୍ଦ୍ରସେନ କହିଲେ, "ବେଶ୍ । ତାହାହିଁ ହେବ ।"

ଇତିମଧ୍ୟରେ ବେଶ୍ କିଛି ସମୟ ବିତି ଯାଇଥାଏ । ବଣ ଭିତରୁ ସେମାନଙ୍କ ଅନୁଚରମାନେ ପରସ୍ପର ଡକାଡକି ହେବାର ଶବ୍ଦ ଶୁଭୁଥାଏ । ଅନେକେ ଦୀର୍ଘ ସମୟ ପରିଶ୍ରମ କରି ହାଲିଆ ହୋଇଯାଇ ଥାଆନ୍ତି । ତଥାପି ନାଗବର୍ମାକୁ ଧରିଦେଲେ ରାଜ୍ୟରୁ କିଛି ଅଂଶ ମିଳିବ, ଏ ପ୍ରଲୋଭନ ଯୋଗୁଁ ସେମାନେ ବଣ ଭିତରେ ଖୋଜାଖୋଜିରୁ ବିରତ ହେଉ ନଥାନ୍ତି । ଅନ୍ଧାର ହୋଇ ଆସୁଥାଏ । କେହି କେହି ଯାଇ ପ୍ରତ୍ୟେକ ବୁଦା ଆଣ୍ଡେଇ ଦେଖୁଥାନ୍ତି । ବଣର ପଶୁପକ୍ଷୀମାନେ ଆତଙ୍କିତ ହୋଇ ପଳାଉଥାନ୍ତି । ମଧ୍ୟେ ମଧ୍ୟେ ସାପ ବି ବାହାରୁଥାନ୍ତି ।

(କ୍ରମଶଃ)





# ଦୁଇ ଦେବୀ

ନିଶା ଗରଜୁଥାଏ । ଝୁହାଲୁ ଝୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

ରାଜା ବିକ୍ରମାର୍କ କିନ୍ତୁ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ତମେ ଏ ଭୟାବହ ରାତିରେ ଯେ ଏଭଳି ଦୁଃସାହସିକ କାମ ହାତକୁ ନେଇଛ, ଏହା ପଛରେ ନିଶ୍ଚୟ କିଛି ଶକ୍ତିଲାଭ କରିବା

## ବେତାଳ କଥା



ହେଲ ତମର ଉଦ୍ଦେଶ୍ୟ । କିନ୍ତୁ ଜାଣିଥାଅ, ଯେଉଁ ପ୍ରକାର ଶକ୍ତି ତୁମେ ଆୟତ୍ତ କର ନା କାହିଁକି, ତାହା ସହିତ ତମକୁ କିଛି ନା କିଛି ସର୍ତ୍ତ ନିଶ୍ଚୟ ମାନିବାକୁ ପଡ଼ିବ । ସବୁବେଳେ ସର୍ତ୍ତ ମାନିବା ସହଜ ନୁହେଁ । ଗୋଟିଏ ଦୃଷ୍ଟାନ୍ତ ଦେଉଛି; ତାହା ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ଶିଳପୁର ରାଜ୍ୟର ସୀମାନ୍ତବର୍ତ୍ତୀ ବଣରେ ଥିଲେ ଦୁଇଜଣ ଯକ୍ଷିଣୀ । ଦୁହେଁ ତପସ୍ୟା କରି ଏଭଳି ସିଦ୍ଧି ଲାଭ କଲେ ଯେ କାଳକ୍ରମେ ଲୋକେ ଦୁହିଁଙ୍କୁ ଦେବୀ ଭାବରେ ପୂଜା କଲେ ।

ବଣର ଦୁଇ କୋଣରେ ଦୁଇ ଦେବୀଙ୍କର ମନ୍ଦିର ଥାଏ । ଜଣେ ଦେବୀଙ୍କ ନାମ ପ୍ରିୟାମ୍ବା ଓ ଅନ୍ୟ ଦେବୀଙ୍କର ନାମ ଭାଗ୍ୟାମ୍ବା ।

ପ୍ରିୟାମ୍ବା ତାଙ୍କ ପାଖକୁ ଆସୁଥିବା ଭକ୍ତମାନଙ୍କ ଭିତରୁ ଯେ କୌଣସି ଜଣକର ଗୋଟିଏ ପ୍ରାର୍ଥନା ପୂରଣ କରି ପାରୁଥିଲେ । ଭାଗ୍ୟାମ୍ବା କିନ୍ତୁ ଯେ କୌଣସି ଦୁଇଜଣ ଭକ୍ତଙ୍କର ଦୁଇଗୋଟି ପ୍ରାର୍ଥନା ପୂରଣ କରି ପାରୁଥିଲେ ।

ଅବଶ୍ୟ ଭାଗ୍ୟାମ୍ବାଙ୍କର ଅଧିକା ଶକ୍ତି ଯୋଗୁଁ ତାଙ୍କୁ କେତେକ ସର୍ତ୍ତ ମାନିବାକୁ ପଡୁଥିଲା ।

ଲୋକେ ଅବଶ୍ୟ ଦେବୀ ଦୁଇଜଣଙ୍କର ଶକ୍ତି ଏହିପରି ଭାବରେ ସୀମାବଦ୍ଧ ବୋଲି ଜାଣୁ ନଥିଲେ । କିନ୍ତୁ ଭାଗ୍ୟାମ୍ବାଙ୍କ ପାଖକୁ ଆସୁଥିବା ଭକ୍ତମାନଙ୍କ ଭିତରୁ ଅଧିକ ଲୋକଙ୍କର ମନକାମନା ପୂର୍ଣ୍ଣ ହେଉଥିବା ଯୋଗୁଁ ତାଙ୍କ ପାଖକୁ ଅଧିକ ଭକ୍ତ ଆସୁଥିଲେ ।

ମଧ୍ୟେ ମଧ୍ୟେ ରାତି ଅଧରେ ଦୁଇ ଦେବୀଙ୍କର ଭେଟ ହେଉଥିଲା । ଭାଗ୍ୟାମ୍ବା ତାଙ୍କ ପାଖକୁ ଅଧିକ ସଂଖ୍ୟକ ଭକ୍ତ ଆସୁଥିବା ଯୋଗୁଁ ମନେ ମନେ ଗର୍ବ ବୋଧ କରୁଥିଲେ । ସେ ପ୍ରିୟାମ୍ବାଙ୍କୁ କହୁଥାନ୍ତି, "ତୋ ମନ୍ଦିରକୁ ଏତେ କମ୍ ଭକ୍ତ ଆସୁଛନ୍ତି ? ବଡ଼ ଦୁଃଖର ବିଷୟ !"

ପ୍ରିୟାମ୍ବା କହନ୍ତି, "ଦୁଃଖ ଯଦି ହେବାର କଥା, ତେବେ ସିନା ମୋର ହେବାର କଥା,

ତୁ ଦୁଃଖିତ ହେବାର କ'ଣ ଅଛି ? ତୋ ପାଖକୁ ତ ଅନେକେ ଆସୁଛନ୍ତି !"

"ହଁ ଭଉଣୀ, ମୋ ପାଖକୁ ବହୁତ ଭକ୍ତ ଆସୁଛନ୍ତି । ତୋ ଅବସ୍ଥା ଦେଖି ମୋର ତୋ ପ୍ରତି ଦୟା ହେଉଛି !" ଭାଗ୍ୟାମ୍ବା କହୁଥାନ୍ତି ।

ଗମ୍ଭୀର ହୋଇ ପ୍ରିୟାମ୍ବା କହନ୍ତି, "ଦେଖ, ତୋ' ମନରେ ଏଭଳି ଗର୍ବ ଆସିବା ଉଚିତ ନୁହେଁ । ଗର୍ବଠୁଁ ବଳି କ୍ଷତିକାରକ ମନୋଭାବ କ'ଣ ଅଛି ? ମୋର ସୁଯୋଗ ଥିଲେ ତୋ ଶକ୍ତି କାଢ଼ି ନିଅନ୍ତି !"

ଭାଗ୍ୟାମ୍ବା ହସି ହସି ଚାଲିଯାଆନ୍ତି ।

ଦିନ କଟିଯାଉଥାଏ । ଦିନେ ଭାଗ୍ୟାମ୍ବାଙ୍କ ମନ୍ଦିରକୁ ଆସିଲେ ଶିଳପୁରର ରାଜା । ସେ ନମ୍ର ଭାବରେ ଦେବୀଙ୍କୁ ପ୍ରଣାମ କରି କହିଲେ, "ଦେବୀ ! ମୁଁ ଆମର ପ୍ରତିବେଶୀ ରାଜ୍ୟ ମନ୍ଦରପୁର ଆକ୍ରମଣ କରିବାକୁ ଯାଉଛି । ଯେତେ ଲୋକକ୍ଷୟ ହେଉ ନା କାହିଁକି, ମୋର ବିଜୟ ହେବା ଚାହିଁ ! ମୋର ଏହି କାମନା ପୂରଣ କର !"

ରାଜା ମନ୍ଦିରରୁ ଚାଲିଯିବାର ଅଳ୍ପ ସମୟ ଉତ୍ତାରୁ ସେଠାରେ ଆସି ପହଞ୍ଚିଲା ରୁଦ୍ରସିଂହ ନାମକ ଡାକୁ ସର୍ଦ୍ଦାର । ସେ ଦେବୀଙ୍କୁ ପ୍ରଣାମ କରି କହିଲା, "ଦେବୀ ! ଆଜି ସହରରେ ଶେଠ ମୋତିଲାଲ୍‌ର ଝିଅର ବାହାଘର । ବେଦୀ ପାଖରେ ଶେଠ୍ ବହୁ ସୁନା ଓ ହୀରାର ଅଳଙ୍କାର ଠୁଳ କରିବ । ସେତିକିବେଳେ ମୁଁ ମୋ ଦଳକୁ ନେଇ ଅଗ୍ନିକ ଡ଼େଇଁ କରି ସେସବୁ ଲୁଟି ନେବି ବୋଲି ସ୍ଥିର





କରିଛୁ । ମୁଁ ଯେପରି ନିରାପଦରେ ଏପରି କରିପାରେଁ !"

ତାକୁ ଚାଲିଯିବାର ଅଳ୍ପ ସମୟ ପରେ ରକ୍ତ ଭୈରବ ନାମକ ରାକ୍ଷସ ଆସି ପ୍ରଣାମ କରି କହିଲା, "ଦେବୀ ! ଆଜକୁ ଚାରିଦିନ ଧରି ମୁଁ ମଣିଷ ଖାଇବାକୁ ପାଇ ନାହିଁ । ମୋତେ ଅନ୍ୟ ଆହାର ରୁଚୁ ନାହିଁ । ଆଜି ଯେପରି ମୁଁ ଚାରିଟା ମଣିଷ ପାଇଯିବି ! ଦେଖ ମା ! ମୋର ଏ ବାସନା ଯେପରି ପୂରଣ ହୁଏ !"

ଏହା କହି ସେ ଚାଲିଗଲା ।

ଦେବୀ ଭାଗ୍ୟାମ୍ବା ବଡ ଅଡୁଆରେ ପଡିଲେ । ଏ ତିନିଗୋଟି ପ୍ରାର୍ଥନାରୁ ସବୁଗୁଡିକ ଅନ୍ୟାୟ ଓ ଅନ୍ୟର ଅନିଷ୍ଟକାରୀ କାମନା । ସେ ଏଥିରୁ ଗୋଟିଏ ବି ପୂରଣ କରିବାକୁ ଚାହୁଁ ନଥିଲେ । କିନ୍ତୁ ନିୟମ ଅନୁସାରେ ସେ ଯଦି ଲୋକେ ପ୍ରାର୍ଥନା କରିବା ସତ୍ତ୍ୱେ ଯେ କୌଣସି ଦୁଇଟି ପ୍ରାର୍ଥନା ପୂରଣ ନ କରିବେ, ତେବେ ତାଙ୍କ ଶକ୍ତି ଚାଲିଯିବ । କେହି ଯଦି ପ୍ରାର୍ଥନା ନ କରନ୍ତି, ତେବେ ସେ ବର ନ ଦେଲେ ଶକ୍ତି ଉପରେ ଆଞ୍ଚ ଆସିବ ନାହିଁ । କିନ୍ତୁ ଏ କ୍ଷେତ୍ରରେ ତ ତିନିଜଣ ପ୍ରାର୍ଥନା କରିଛନ୍ତି !

ସେ ଅନ୍ୟ କେହି ଭକ୍ତ ଭଲ ପ୍ରାର୍ଥନା ଧରି ଆସିବେ, ସେହି ଆଶାରେ ଅପେକ୍ଷା କଲେ । କିନ୍ତୁ ଦିନଟି ବିତିଗଲା । ଆଉ କେହି ସେଦିନ କୌଣସି ପ୍ରାର୍ଥନା ଜଣାଇଲେ ନାହିଁ ।

ଭାଗ୍ୟାମ୍ବା ବଡ ଚିନ୍ତିତ ଭାବରେ ମଧ୍ୟରାତ୍ରିରେ ପ୍ରିୟମ୍ବାଙ୍କୁ ଭେଟିଲେ ଓ ନିଜ ସମସ୍ୟା କଥା କହିଲେ । ତା'ପରେ ସେ ପଚାରିଲେ, "ମୁଁ କ'ଣ କରିବି କହିଲ ? ଏଭଳି ଅନ୍ୟାୟ ପ୍ରାର୍ଥନାମାନ ପୂରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ବରଂ ମୁଁ ଶକ୍ତିହୀନା ହୋଇ ମୋ ପୂର୍ବ ଯକ୍ଷିଣୀ ଅବସ୍ଥାକୁ ଫେରିଯିବି !"

"ତୁ ଏପରି ବିବ୍ରତ ହେବାର କାରଣ ନାହିଁ ।" ପ୍ରିୟମ୍ବା କହିଲେ ।

"ବିବ୍ରତ ହେବି ନାହିଁ ? କେତେ ଶ୍ରମ ସ୍ୱୀକାର କରି ଶକ୍ତି ପାଇଥିଲି । ସେ ଶକ୍ତି

ଚାଲିଯିବ । ଠିକ୍ ଅଛି । ଚାଲିଯାଉ !" ଭାଗ୍ୟାମ୍ବା କହିଲେ ।

ପ୍ରିୟମ୍ବା ତାଙ୍କୁ ଆଶ୍ୱାସନା ଦେଇ କହିଲେ, "ତୁ କାହିଁକି ବ୍ୟସ୍ତ ହେଉଛୁ ? ତୁ ଯେ ତିନି ପ୍ରାର୍ଥନାରୁ ଗୋଟିଏ ବି ପୂରଣ କର ନା । ତୋର ଶକ୍ତି ଚାଲିଯିବ ନାହିଁ । ଗଲେ ବି ସେ ଶକ୍ତି ତୁ ଫେରି ପାଇବୁ !"

ଆଶ୍ଚର୍ଯ୍ୟ ହୋଇ ଭାଗ୍ୟାମ୍ବା ପଚାରିଲେ, "କିପରି ?"

ପ୍ରିୟମ୍ବା କହିଲେ, "ତୁ ଦୁଇଟି ପ୍ରାର୍ଥନା ପୂରଣ ନ କଲେ ତୋର ଶକ୍ତି ଚାଲିଯିବ ଠିକ୍ । କିନ୍ତୁ ତୁ ତା'ପରେ ମୋତେ ପ୍ରାର୍ଥନା କରି କହିବୁ, 'ଦେବୀ ! ମୋର ପୂର୍ବ ଶକ୍ତି ଫେରାଇ ଦିଅ !' ଆଜି ଯାବଦନ ମୋତେ କେହି କିଛି ପ୍ରାର୍ଥନା ଜଣାଇ ନାହାନ୍ତି । ଅତଏବ ଗୋଟିଏ ବର ଦେବାର ଶକ୍ତି ମୋର ଅତୁଟ ରହିଛି । ମୁଁ ତୋ ପ୍ରାର୍ଥନା ପୂରଣ କରିବି । ତୁ ତୋର ଶକ୍ତି ଫେରି ପାଇବୁ !"

ଭାଗ୍ୟାମ୍ବା ନୀରବରେ କ'ଣ ଭାବିଲେ । ତା'ପରେ କହିଲେ, "ବେଶ୍, ତାହାହିଁ ହେଉ । ମୁଁ ଆଜିଠୁ କୌଣସି ପ୍ରାର୍ଥନା ପୂରଣ କରିବି ନାହିଁ ବୋଲି ନିଷ୍ପତ୍ତି ନେଲି !"

ସେ ଏହା କହିବା ମାତ୍ରେ ତାଙ୍କ କଳେବରରୁ ଜ୍ୟୋତି ଲିଭିଗଲା । ସେ ନିସ୍ତେଜ ଅନୁଭବ କଲେ, ସେ ବୁଝିଲେ ଯେ ତାଙ୍କ ଶକ୍ତି ଚାଲିଗଲା । ସେ ପରେ ପରେ ଦେବୀ ପ୍ରିୟମ୍ବାଙ୍କୁ ହାତଯୋଡ଼ି କହିଲେ, "ଦେବୀ ! ମୋର ପ୍ରାର୍ଥନା ହେଲା, ମୁଁ ହରାଇଥିବା ଶକ୍ତି ଫେରି ଆସୁ !"



ପ୍ରିୟାମ୍ବା କହିଲେ, "ତଥାସ୍ତୁ !"

ସଙ୍ଗେ ସଙ୍ଗେ ଭାଗ୍ୟାମ୍ବାଙ୍କ ଚେହେରା ପୁଣି ଉଜ୍ଜ୍ୱଳ ହୋଇ ଉଠିଲା । ସେ ତାଙ୍କ ଶକ୍ତି ଫେରି ପାଇଲେ ଓ ପ୍ରିୟାମ୍ବାଙ୍କ ପ୍ରତି କୃତଜ୍ଞତା ଜଣାଇ ନିଜ ମନ୍ଦିରକୁ ଗଲେ ।

ବେତାଳ ଟିକିଏ ଚୁପ୍ ରହି ରାଜା ବିକ୍ରମାର୍କଙ୍କୁ ପ୍ରଶ୍ନ କଲା, "ରାଜା! ପ୍ରିୟାମ୍ବା ଏପରି କିପରି କଲେ ? ସୁଯୋଗ ପାଇଲେ ସେ ଭାଗ୍ୟାମ୍ବାଙ୍କ ଶକ୍ତି କାଢ଼ି ନେବେ ବୋଲି କେତେଥର କହିଥିଲେ । ଆଜି ଭାଗ୍ୟାମ୍ବାଙ୍କ ଶକ୍ତି ଚାଲିଯିବା ସ୍ଥଳେ ତାଙ୍କୁ ଫେରାଇ ଆଣିବା ପାଇଁ ସେ ବର ଦେଲେ କିପରି ? ପାରିଲେ ମୋ ସନ୍ଦେହ ମୋଚନ କର । ପ୍ରଶ୍ନର ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ । ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ଭାଗ୍ୟାମ୍ବାଙ୍କ ଶକ୍ତି କାଢ଼ିନେବା ପ୍ରିୟାମ୍ବାଙ୍କ ଉଦ୍ଦେଶ୍ୟ ନଥିଲା । ଭାଗ୍ୟାମ୍ବା ଗର୍ବ କରୁଥିଲେ ବୋଲି ପ୍ରିୟାମ୍ବା ସେପରି କହୁଥିଲେ । କିନ୍ତୁ ସମସ୍ୟାରେ ପଡ଼ି ଭାଗ୍ୟାମ୍ବାଙ୍କ ଗର୍ବ ଚାଲିଯାଇଥିଲା । ସେ ଯେ ପ୍ରିୟାମ୍ବାଙ୍କ ପାଖରେ ନତମସ୍ତକ ହୋଇ ବର ଭିକ୍ଷା କଲେ, ତାହା ତାଙ୍କ ଗର୍ବ ଚୂର୍ଣ୍ଣ ହୋଇଥିବାର ପ୍ରମାଣ । ତା' ଛଡ଼ା ସେ ଯେ ସେଦିନର ତିନି ପ୍ରାର୍ଥୀଙ୍କ କାମନା ପୂରଣ କଲେ ନାହିଁ, ତାହା ତାଙ୍କ ମହତ୍ତ୍ୱର ପରିଚୟ ଦିଏ । ଅନ୍ୟର ଅନିଷ୍ଟ ନହେଉ, ଏଥିପାଇଁ ସେ ନିଜ ଶକ୍ତି ପରିହାର ପର୍ଯ୍ୟନ୍ତ କଲେ । ସେ ପ୍ରିୟାମ୍ବାଙ୍କୁ ଅବିଶ୍ୱାସ କରିଥିଲେ ତାଙ୍କ ପରାମର୍ଶ ଗ୍ରହଣ କରି ନଥାନ୍ତେ । କିନ୍ତୁ ପ୍ରିୟାମ୍ବାଙ୍କ ପ୍ରତି ତାଙ୍କର ବିଶ୍ୱାସ ଥିଲା ଓ ପ୍ରିୟାମ୍ବା ସେ ବିଶ୍ୱାସର ମର୍ଯ୍ୟାଦା ରଖିଲେ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






# ରତ୍ନହାର ଉଦ୍ଧାର

ମହେନ୍ଦ୍ରପୁରର ରାଜା ରାଜକୁମାରୀଙ୍କୁ ଧରି ନିଜ ଶ୍ୱଶୁର ଘର ଶଙ୍ଖମାଳ ରାଜ୍ୟକୁ ଯାଉଥିଲେ । ରାଜକୁମାରୀ ମାମୁଁ ଘରକୁ ଯାଉଥିବାରୁ ଅନେକ ମୂଲ୍ୟବାନ ଅଳଙ୍କାର ସାଥିରେ ନେଇଥିଲେ ।

ରାଜକୁମାରୀଙ୍କ ଜନ୍ମଦିନରେ ତାଙ୍କ ଅଜା ଆଇ ତାଙ୍କ ପାଖକୁ ଗୋଟିଏ ଚମତ୍କାର ରତ୍ନହାର ଉପହାର ପଠାଇଥିଲେ । ରାଜକୁମାରୀଙ୍କୁ ସେ ଗୋଟିକ ଭାରି ଭଲ ଲାଗୁଥିଲା । ତାକୁ ବି ସେ ସାଥିରେ ନେଇଥିଲେ । ତାହା ପିନ୍ଧି ଅଜା ଆଇଙ୍କ ଆଗରେ ବାହାରିଲେ ସେ ଦୁହେଁ କେତେ ଖୁସି ହେବେ !

ରାଜା, ରାଜକୁମାରୀ, ମନ୍ତ୍ରୀ ଓ ସେମାନଙ୍କ ପରିଚାରକ ତଥା ଦେହରକ୍ଷୀମାନେ ରାତିରେ ରାଜଧାନୀଠୁଁ ପଚାଶ ମାଇଲ ଦୂରବର୍ତ୍ତୀ ରାଜାଙ୍କର ଏକ ପ୍ରାସାଦରେ ବିଶ୍ରାମ ନେଲେ । ସେଠାକାର ସ୍ଥାନୀୟ ଲୋକମାନେ ରାଜା ଓ ରାଜକୁମାରୀଙ୍କ ଆଗରେ ନୃତ୍ୟଗୀତ ପରିବେଷଣ କଲେ ଓ ସନ୍ଧ୍ୟାଟି ଭଲରେ କଟିଲା । ଶୋଉଁ ଶୋଉଁ ବହୁତ ରାତି ହେଲା । ସକାଳେ ଦେଖାଗଲା ରାଜକୁମାରୀଙ୍କ ଅମୂଲ୍ୟ ରତ୍ନହାର ଚୋରି ହୋଇଯାଇଛି ।

ରାଜକୁମାରୀ ବଡ଼ ଦୁଃଖ ପାଇଲେ । କାରଣ ସେ ଗୋଟିକ ଥିଲା ତାଙ୍କର ପ୍ରିୟ ଅଳଙ୍କାର ।

ସେହି ପ୍ରାସାଦରେ ପରିଚାରକଗଣ ଏବଂ ରାଜାଙ୍କ ସାଙ୍ଗରେ ଥିବା ପରିଚାରକଗଣ, ଏହିମାନଙ୍କ ଭିତରୁ ଜଣେ କେହି ହାର ନିଶ୍ଚେ ନେଇଥିଲା । କିନ୍ତୁ କିଏ ସେ ଚୋର ?

ମନ୍ତ୍ରୀ ସମସ୍ତଙ୍କୁ ଡକାଇ ପଚାରିଲେ । କେହି ମାନିଲେ ନାହିଁ । ସେତିକିବେଳେ ଜଣେ ଗୁପ୍ତଚର ଆସି ତାଙ୍କୁ କହିଲା, "ହଜୁର ! ତାନ୍ତ୍ରିକ ଗର୍ଗଶର୍ମା ଜମ୍ବୁଳଗ୍ରାମ

ପଚାଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଅଭିମୁଖେ ଯାଉଛନ୍ତି । ତାଙ୍କ ସାହାଯ୍ୟ ନିଆଯାଇପାରେ ।"

ମନ୍ତ୍ରୀ ସଙ୍ଗେ ସଙ୍ଗେ ତାନ୍ତ୍ରିକଙ୍କୁ ଡକାଇଲେ । ତାନ୍ତ୍ରିକ ଆସି ପହଞ୍ଚିଛନ୍ତି, ସେତିକିବେଳେ ତିନି ଚାରିଜଣ ଲୋକ ଆସି ମନ୍ତ୍ରୀଙ୍କୁ ନମସ୍କାର କଲେ ଓ ଜଣେ କହିଲେ, "ଆଜ୍ଞା, ମୁଁ ଜଣେ ବଣିକ । ମୁଁ ଶଙ୍ଖମାଳ ଯିବା ବାଟରେ ଏଠାକାର ଅତିଥି ଭବନରେ ଥିଲି । ମୋ ପାଖରେ ଥିବା ପାଞ୍ଚ ସହସ୍ର ସ୍ୱର୍ଣ୍ଣ ମୁଦ୍ରା ଚୋରି ହୋଇଯାଇଛି । ଅତିଥିଭବନରେ ଏ ଭଦ୍ରଲୋକ କେତେଜଣ ବି ଥିଲେ ।"

ମନ୍ତ୍ରୀ ତାନ୍ତ୍ରିକ ଆଡ଼େ ଅନାଇ ପଚାରିଲେ, "ଗର୍ଗଶର୍ମା ! ତମ ଶକ୍ତି ବିଷୟରେ ଆମେ ଅନେକ କଥା ଶୁଣିଛୁଁ । ଏ ବଣିକଙ୍କ ଅର୍ଥ କିଏ ନେଲା ତାହା କହିଦେଇ ପାରିବ ?"

ଗର୍ଗଶର୍ମା କିଛି ନକହି ବଣିକ ସହ ଆସିଥିବା ଲୋକଙ୍କ ମୁଣ୍ଡରେ ନିଜ ମନ୍ତ୍ରଦଣ୍ଡ ଛୁଆଇଁ ଦେଲେ । ତହୁଁ ଭିତରୁ ଜଣେ ଚିତ୍କାର କରି ତଳେ କଚଡ଼ି ହୋଇ ପଡ଼ିଲା ଓ ଛଟପଟ ହୋଇ ହୋଇ କହିଲା, "ମୋତେ ବଞ୍ଚାଅ ! ମୁଁ ସ୍ୱର୍ଣ୍ଣମୁଦ୍ରାତକ ନେଇଛି ଠିକ୍ । ସବୁ ଦେଇଦେବି ।" ବଣିକ ଓ ମଂତ୍ରୀ ତାଂତ୍ରିକଙ୍କୁ ଧନ୍ୟବାଦ ଦେଲେ । ମଂତ୍ରୀ ତାଂତ୍ରିକଙ୍କୁ କହିଲେ, "ଏଥର ତମେ ରାଜକୁମାରଙ୍କ ହାର କିଏ ନେଲା ବାହାର କର ।"

ତାଂତ୍ରିକ ଯାଦୁ ବାଡ଼ି ଉଠାଇ ସମବେତ ପରିଚାରକବର୍ଗଙ୍କ ଆଡ଼କୁ ଦୁଇପାଦ ଅଗ୍ରସର ହୋଇଛନ୍ତି, ଲତିକା ନାମ୍ନୀ ଜଣେ ପରିଚାରିକା ମଂତ୍ରୀଙ୍କ ପାଦ ତଳେ ପଡ଼ିଯାଇ କାନ୍ଦି କାନ୍ଦି କହିଲା, "ହଜୁର୍ ! ହାର ମୋଠି ଅଛି । ମୁଁ ଆଣି ଦେଉଛି !"

"ବେଶ୍ । ତାଂତ୍ରିକ ଗର୍ଗଶର୍ମା ! ତମେ ଯାଇପାର !" ମଂତ୍ରୀ କହିଲେ ।

କହିବା ବାହୁଲ୍ୟ, ତାଂତ୍ରିକ, ବଣିକ ଓ ବଣିକ ସହ ଆସିଥିବା ଲୋକେ ସବୁ ମଂତ୍ରୀଙ୍କ ମଂତ୍ରଣାରେ ଛଦ୍ମବେଶ ପକାଇ ଆସିଥିଲେ ।



ଭାରତର ଇମାରତ

# ଲାଲ୍ କିଲ୍ଲା




ବିଖ୍ୟାତ ଐତିହାସିକ ଫର୍ଗୁସନଙ୍କ ମତରେ ଦିଲ୍ଲୀର ଲାଲକିଲ୍ଲା ଖାଲି ସମଗ୍ର ପ୍ରାଚ୍ୟ ଭୂଖଣ୍ଡରେ କାହିଁକି, ବୋଧହୁଏ ସମଗ୍ର ପୃଥିବୀର ସବୁଠାରୁ ଚମତ୍କାର ପ୍ରାସାଦ । ପୃଥିବୀର ଅନ୍ୟ କୌଣସି ଦୁର୍ଗର ଇତିହାସରେ ଏତେ ବିଳାସ ବ୍ୟସନ ଓ ଐଶ୍ୱର୍ଯ୍ୟ ଠୁଳ ହୋଇନଥିବ କି ଏତେ ଦୁଃଖଦାୟକ ଘଟଣା ବି ଘଟି ନଥିବ ।



ମୋଗଲ୍ ସମ୍ରାଟ ଶାହ୍‌ଜାହାନ୍ ଆଗ୍ରାରୁ ତାଙ୍କ ରାଜଧାନୀ ଦିଲ୍ଲୀକୁ ସ୍ଥାନାନ୍ତର କଲେ ଓ ୧୬୩୯ ମସିହାରେ ଏ ଦୁର୍ଗ ନିର୍ମାଣ ଆରମ୍ଭ କଲେ । ମାତ୍ର ଦଶବର୍ଷ ଭିତରେ ତାଙ୍କ ତତ୍ତ୍ୱାବଧାନରେ ଏହି ବିଶାଳ ଦୁର୍ଗ ନିର୍ମାଣ ଶେଷ ହେଲା ।

ଭୂମିକମ୍ପ ଅଥବା ଆକ୍ରମଣକାରୀମାନଙ୍କ ଧ୍ୱଂସଲୀଳା ଯୋଗୁଁ ଦୁର୍ଗ ମଧ୍ୟସ୍ଥ ଅନେକ କୋଠା ଲୁପ୍ତ ହୋଇଯାଇଛି । କିନ୍ତୁ ଯେତିକି ଅଛି, ସେସବୁ ଅତ୍ୟନ୍ତ ଚିତ୍ତାକର୍ଷକ । ଚାନ୍ଦନିଚୌକ ଅଞ୍ଚଳକୁ ମୁହଁ କରିଥିବା ଲାହୋର ଫାଟକ ତନ୍ମଧ୍ୟରେ ଅନ୍ୟତମ ।






କିନ୍ତୁ ମୟୁର ସିଂହାସନ ଓ ପୃଥିବୀର ଦୁର୍ମୂଲ୍ୟତମ ହୀରକ ରାଶି ସମ୍ବଳିତ ଲାଲକିଲ୍ଲାର ସୁଖମୟ ଦିନ ଦୀର୍ଘସ୍ଥାୟୀ ହେଲା ନାହିଁ । ଶାହ୍‌ଜହାନ୍ ଅସୁସ୍ଥ ହୋଇ ପଡ଼ିବା ମାତ୍ରେ ତାଙ୍କ ତୃତୀୟ ପୁତ୍ର ଆଉରଂଜେବ୍ ଯୁବରାଜ ଦାରାଙ୍କୁ ହାତୀ ଗୋଡ଼ରେ ବାନ୍ଧି ନଗରୀ ମଧ୍ୟ ଦେଇ ନେଇଯାଇ ହତ୍ୟା କଲେ ।

ଆଉରଙ୍ଗ୍‌ଜେବ୍‌ଠୁଁ ମୋଗଲ ବଂଶର ପତନ ଆରମ୍ଭ ହେଲା । ଶାସକମାନେ ଦୁର୍ବଳ ହୋଇ ପଡ଼ିବାରୁ ୧୭୩୯ ରେ ପାରସ୍ୟର ସୁଲତାନ ନାଦିରଶାହ୍ ଦିଲ୍ଲି ଆକ୍ରମଣ କଲା । ଏକଶତ ହସ୍ତୀ ସମନ୍ୱିତ ଗୋଟିଏ ଶୋଭାଯାତ୍ରାରେ ସେ ସିଂହାସନ ପାଇ ଲାଲ୍‌କିଲ୍ଲାରେ ପହଞ୍ଚି ମୋଗଲ 'ସମ୍ରାଟ' ମହମ୍ମଦ ଶାହ୍‌ଙ୍କ ନଅର ଭିତରେ ରହିଲା ।





ସେଦିନ ସନ୍ଧ୍ୟାବେଳେ ନାଦିର ଶାହ୍‌ର କେତେଜଣ ସୈନ୍ୟ ଗୋଟିଏ ଯୋଡ଼ିଏ ଦୋକାନରେ ଜବରଦସ୍ତ ପଣି ଲୁଣ୍ଠନ ଆରମ୍ଭ କରନ୍ତେ ଦୋକାନୀମାନଙ୍କ ବାଧା ଦାନ ଫଳରେ ମଲେ । ସକାଳ ହେବା ମାତ୍ରେ ନାଦିର୍ ଶାହ୍ ହୁକୁମ ଦେଲା : ଦିଲ୍ଲିର ଆବାଳ ବୃଦ୍ଧ ଜନତାଙ୍କୁ ହତ୍ୟା କର ! କୋଡ଼ିଏ ହଜାର ଲୋକ ନିହତ ହେଲେ । ଅନେକ ନାରୀ ଆତ୍ମହତ୍ୟା କଲେ ।

ନାଦିର ଶାହ ଦିଲ୍ଲିରୁ ଯେତେ ଧନ ଲୁଣ୍ଠନ କଲା, ଇତିହାସରେ ତା'ର ତୁଳନା ନାହିଁ । ଏହା ପରେ ବି ଲାଲକିଲ୍ଲାକୁ ବହୁ ଆକ୍ରମଣ ସାମ୍‌ନା କରିବାକୁ ହେଲା । ୧୭୮୮ ରେ ରୋହିଲାମାନେ ଦିଲ୍ଲି ଅବରୋଧ କଲେ । ସେମାନଙ୍କ ନେତା ଗୁଲମ୍ କାଦିର୍ ମୋଗଲ୍ ବାଦଶାହ୍ ଶାହା ଆଲମ୍‌ଙ୍କଠୁଁ କିଛି ନ ପାଇ ନିଜ ହାତରେ ତାଙ୍କ ଆଖି ଫୁଟାଇଦେଲା ।





୮୫୭ରେ ହେଲା ବିଖ୍ୟାତ ସିପାହୀ ବିଦ୍ରୋହ । ବିଦ୍ରୋହୀମାନେ ଦୁର୍ଗ ଆଗରେ ଜମା ହୋଇ ଶେଷ ମୋଗଲ ବାଦ୍‌ଶାହ ବାହାଦୁର ଶାହ୍‌ ଜାଫରଙ୍କ ସମର୍ଥନ ପାଇଁ ଅଡ଼ି ବସିଲେ । ବାଦ୍‌ଶାହ ସେମାନଙ୍କୁ ନିଜ ସମର୍ଥନ ଜଣାଇଲେ । କିନ୍ତୁ ବିଦ୍ରୋହ ସଫଳ ହେଲା ନାହିଁ । ଇଂରେଜମାନେ ବିଦ୍ରୋହ ଦମନ କରି ବାଦ୍‌ଶାହାଙ୍କୁ ବନ୍ଦୀକରି ବ୍ରହ୍ମଦେଶ ପଠାଇ ଦେଲେ ।

୧୯୪୫ ରେ ଲାଲକିଲ୍ଲାରେ ନେତାଜୀ ସୁଭାଷ ବୋଷଙ୍କ ଆଜାଦହିନ୍ଦ୍‌ ଫୌଜର ବିଚାର ହେଲା । ନେହେରୁ, ସର୍ଦ୍ଦାର ପଟେଲ୍‌, ଆସଫ୍‌ ଅଲି, ତେଜ୍‌ ବାହାଦୁର ସାପ୍ରୁ, ଭୁଲାଭାଇ ଦେଶାଇ ପ୍ରମୁଖ ଓକିଲାତି ପଢିଥିବା ନେତାମାନେ ବିଦ୍ରୋହୀ ସେନାପତିମାନଙ୍କ ସପକ୍ଷରେ ଲଢ଼ିଲେ । ବିଚାରରେ ତିନି ସେନାପତି ଦଣ୍ଡିତ ହେଲେ, କିନ୍ତୁ ସେ ଦଣ୍ଡ କାର୍ଯ୍ୟକାରୀ ହେଲା ନାହିଁ ।





୧୯୪୭ ଅଗଷ୍ଟ ୧୫ ତା: ରେ ଭାରତ ସ୍ୱାଧୀନ ହେଲା । ସେଦିନ ଲାଲ କିଲ୍ଲା ଉପରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ଜବାହରଲାଲ୍‌ ନେହେରୁ ଜାତୀୟ ପତାକା ଉତ୍ତୋଳନ କଲେ । ପ୍ରତିବର୍ଷ ସ୍ୱାଧୀନତା ଦିବସରେ ଲାଲକିଲ୍ଲା ଉତ୍ସବ ମୁଖର ଓ ଜନାକୀର୍ଣ୍ଣ ହୁଏ । ଏହି ଯୋଗୁଁ ଲାଲ୍‌କିଲ୍ଲା ଏ ଯୁଗରେ ପୁଣି ନୂତନ ତାତ୍ପର୍ଯ୍ୟର ଅଧିକାରୀ ହୋଇଛି ।



# କୁକୁର ବେପାର

ଅନେକ ଦିନ ତଳର କଥା । ସେତେବେଳେ ହଂଗେରୀରେ ରାଜୁତି କରୁଥିଲେ ମାଥ୍ୟୁସ୍ ନାମକ ରାଜା । ସେ ବଡ଼ ନ୍ୟାୟଶୀଳ ରାଜାଥିଲେ । ସଙ୍ଗେ ସଙ୍ଗେ ଗରୀବ ଏବଂ ଅବହେଳିତ ଲୋକଙ୍କ ପ୍ରତି ତାଙ୍କର ବହୁତ ଦରଦ ଥିଲା ।

ରାଜଧାନୀଠୁଁ ବହୁ ଦୂରବର୍ତ୍ତୀ ଗୋଟିଏ ଗାଁରେ ମାର୍କୋନୀ ନାମକ ଜଣେ ଧନୀ ବାସ କରୁଥିଲା । ଚଡ଼ା ସୁଧରେ ଟଙ୍କା କରଜ ଦେବା ଓ ଜମିବାଡ଼ିରେ ଘର କରିବା ଥିଲା ତା'ର କାମ । ସେ ବହୁତ ଟଙ୍କା ଜମା କରିଥାଏ ।

ଅନ୍ୟକୁ ହଇରାଣ କରି ସେ ଖୁବ୍ ମଜା ପାଉଥାଏ । କେହି ବୋକା ବନିଗଲେ ସେ ହସି ହସି ବେଦମ୍ ହେଉଥାଏ ।

ଦିନେ ମାର୍କୋନୀ ରାଜଧାନୀରୁ ଗାଁକୁ ଫେରୁଥାଏ । ଧରିଥାଏ ଗୋଟାଏ ବୋକଚୃ । ବାଟରେ ତା' ଗାଁର ଜଣେ ଗରୀବ ଲୋକ ଲୁକ୍ ସହ ତା'ର ଭେଟ ହୋଇଗଲା । ଲୁକ୍ ମାର୍କୋନୀର ବୋକଚୃ ନିଜ ହାତକୁ ନେଲା ତାକୁ ସମ୍ମାନ ଦେଖାଇ ।

"ବାବୁ, ବୋକଚୃ ଖୁବ୍ ଓଜନିଆ । ଏଥିରେ ଅଛି କ'ଣ ?" ଲୁକ୍ ପଚାରିଲା ।

ହଠାତ୍ ମାର୍କୋନୀ ମୁଣ୍ଡକୁ ଗୋଟାଏ ଦୁଷ୍ଟବୁଦ୍ଧି ଆସିଗଲା । ସେ କହିଲା, "ଆରେ ଲୁକ୍ ! ସେଥିରେ ସୁନା ଇଟା ଅଛି । ରାଜାଙ୍କର ହଠାତ୍ କୁକୁର କିଣିବା ସଉକ୍ ହୋଇଛି । କାହାକୁ ଏକଥା କହିବୁ ନାହିଁ । ମୁଁ କିଛି କୁକୁର ତାଙ୍କୁ ଧରାଇ ଏତିକ ସୁନା ଆଣିଛି !"

"କ'ଣ କହିଲେ ? ରାଜା କୁକୁର ବାବଦରେ ସୁନା ଇଟା ଦେଲେ ? ରାଜାଙ୍କର କୁକୁର କିଣିବା ପାଇଁ କାହିଁକି ଇଚ୍ଛା ହେଲା ?



କି ପ୍ରକାର କୁକୁର?" ଲୁକ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲା।

"ଆରେ ଲୁକ୍! ରାଜା ରାଜୁଡ଼ାଙ୍କ ଖିଆଲ ଖୁସିରେ କ'ଣ କିଛି ଯୁକ୍ତି ବା ମାନେ ଥାଏ? ଯାହା ମନ ହେବ, ତାହାହିଁ କରିବେ। ରାଜା ଯେ କୌଣସି ବିଶେଷ ଧରଣର କୁକୁର ଚାହୁଁଛନ୍ତି, ତାହା ନୁହେଁ। ଯେ କୌଣସି କୁକୁର ହେଲେ ଚଳିଯିବ।" ମାର୍କୋନି କହିଲା।

ଲୁକ୍ କାବା ହୋଇଗଲା। ମାର୍କୋନିକୁ ଘରେ ପହଞ୍ଚାଇ ଦେଇ ସେ କହିଲା, "ବାବୁ! ତମେ ତ ଜାଣ ମୁଁ ଅତି ଗରିବ ଲୋକ। ମୁଁ ଯଦି ଯୋଡ଼ିଏ କୁକୁର ନେଇ ରାଜାଙ୍କୁ ବିକିବି, ତମର କିଛି ଆପତ୍ତି ଅଛି?"

"ଆରେ ଲୁକ୍! ତୋ କ୍ଷେତ୍ରରେ ଆପତ୍ତି କ'ଣ? ନେଇ ଯା, ନେଇ ଯା। ଆଉ କାହାକୁ କହିବୁ ନାହିଁ। କିନ୍ତୁ ତୁ ଏ ପୋଷାକରେ ଗଲେ ତୋତେ ତ ନଅର ଫାଟକରୁ ଫେଡ଼ାଇ ଦେବେ। ତୁ ରାଜାଙ୍କୁ ଭେଟିବୁ କିପରି?" ମାର୍କୋନି କହିଲା।

ଲୁକ୍ ମାର୍କୋନିର ପରାମର୍ଶ ଗ୍ରହଣ କରି ନିଜର ଦୁଧିଆଳ ଗାଈଟିକୁ ତାକୁ ବିକିଲା ଖୁବ୍ ଶସ୍ତାରେ ଓ ସେହି ପଇସାରେ ଭଲ ପୋଷାକ କିଣିଲା। ଦୁଇଦିନ ପରେ ଯୋଡ଼ିଏ ବୁଲାକୁକୁର ସଂଗ୍ରହ କରି ଦଉଡ଼ିରେ ବାନ୍ଧି ରାଜଧାନୀ ଅଭିମୁଖେ ଚାଲିଲା। ନଅର ଦ୍ୱାର ପାଖରେ ଜଗୁଆଳିମାନେ ତାକୁ ଅଟକାଇ ଦେଲେ। ସେ ଯେତେ ପ୍ରକାରେ କହିଲା ଯେ ରାଜା ସତରେ କୁକୁର କିଣିବାକୁ ଚାହାନ୍ତି, ସେମାନେ ସେତେ ଯୋରେ ଯୋରେ ହସିଲେ। ବିଚରା ଲୁକ୍ କାନ୍ଦ କାନ୍ଦ ହେଲା।

ଦୈବକୁ ରାଜା ନଅର ଛାତରେ ବୁଲୁଥିଲେ। ସେ ଘଟଣା କ'ଣ ପଚାରି ବୁଝିଲେ ଓ ଲୁକ୍‌କୁ ଭିତରକୁ ଡକାଇ ସବୁ ଶୁଣିଲେ। ସେ ବୁଝିଲେ ଯେ ମାର୍କୋନି ତା' ସହ ନିଷ୍ଠୁର ଥଟ୍ଟା କରିଛି ଓ ତା' ଦୁଧିଆଳ ଗାଈଟି ହସ୍ତଗତ କରିଛି। ସେ କହିଲେ, "ବାସ୍ତବିକ ମୋର କୁକୁର ଦରକାର।" ଏହା କହି ସେ ତାକୁ ଶହେ ସ୍ୱର୍ଣ୍ଣମୁଦ୍ରା ଦେଲେ ଓ ପୁଣି କହିଲେ, "କାହାକୁ କହିବ ନାହିଁ।"

"ମହିମା! ମୁଁ ମାର୍କୋନୀଙ୍କୁ ନେଇ ପାରେଁ ତ? କାରଣ ସେ ତ ସବୁ ଜାଣନ୍ତି!" ନିରୀହ ଭାବରେ ଲୁକ୍ ପଚାରିଲା।

ରାଜା ହସି "ଆଚ୍ଛା" କହିଲେ।

ଲୁକ୍ ସହରରୁ ସଉଦାପତ୍ର କରି ଗାଡ଼ି ଭଡ଼ା କରି ଗାଁରେ ଯାଇ ପହଞ୍ଚିଲା ଓ ଦୋକାନଟିଏ ଖୋଲିଲା। ରାଜା ସତରେ କୁକୁର କିଣିଲେ—ପୁଣି ଯୋଡ଼ାଏ ବୁଲା କୁକୁର ପାଇଁ ଶହେ ସ୍ୱର୍ଣ୍ଣମୁଦ୍ରା ଦେଲେ—ଏଥିରେ ମାର୍କୋନୀର ବିସ୍ମୟର ସୀମା ନାହିଁ।

ସେ ସଙ୍ଗେ ସଙ୍ଗେ କୁକୁର ସଂଗ୍ରହରେ ଲାଗି ପଡ଼ିଲା। ବୁଲା କୁକୁର ଗୋଟାଏ ଗାଁରେ ବା କେତେ ମିଳିବେ? ସେ ସେଉଠୁ ପୋଷା କୁକୁରମାନ କିଣିଲା। ଲୋକେ ଯାହା ଇଚ୍ଛା ଦାମ କହିଲେ। ପରବାୟ ନକରି ମାର୍କୋନୀ ବହୁ ଅର୍ଥ ବ୍ୟୟ କରି ମାସକ ଭିତରେ ଆଖପାଖ ଅଞ୍ଚଳରୁ ପ୍ରାୟ ଦୁଇଶହ କୁକୁର କିଣି, ଦରମା ଦେଇ କିଛି କର୍ମଚାରୀ ନିଯୁକ୍ତ କରି ସେ ଗୋଟିଏ ବିରାଟ କୁକୁର ଦଳ ଧରି ରାଜଧାନୀକୁ ଗଲା। ଲୋକେ ତାକୁ ଦେଖି ଆଶ୍ଚର୍ଯ୍ୟ ହେଉଥାନ୍ତି।

ନଅର ଫାଟକ ପାଖରେ ଜଗୁଆଳୀମାନଙ୍କ ସହ ହେଲା ଯୁକ୍ତିତର୍କ। ତା' ପାଟି ଶୁଣି କୁକୁରମାନେ ଭୁକିଲେ। ଦୁଇଶହ କୁକୁର ଭୁକିବା କି କମ୍ କଥା? ରାଜା ଛାତ ଉପରୁ ଅନାଇ ଅବସ୍ଥା ଠଉରାଇ ନେଲେ। ସେ ମାର୍କୋନୀକୁ କହିଲେ, "ବାବୁ, ମୋର ଯେତିକି କୁକୁର ଲୋଡ଼ା ଥିଲା, ମୁଁ ପାଇ ସାରିଛି। ଆଉ ଲୋଡ଼ା ନାହିଁ। ଯାଅ।"

ଜଗୁଆଳୀମାନେ ସଙ୍ଗେ ସଙ୍ଗେ ତାକୁ ଓ ତା' କର୍ମଚାରୀଙ୍କ ସମେତ କୁକୁର ଦଳକୁ ଘଉଡ଼ାଇ ଦେଲେ।

ମାର୍କୋନୀର ହୀନସ୍ଥା କଥା ଆଉ କ'ଣ କହିବା? କାନମୁଣ୍ଡା ଆଉଁସି ସେ ଗାଁକୁ ଫେରିଲା। ତେବେ ତେଣିକି ସେ କାହାକୁ ଆଉ ହଇରାଣ କରେନାହିଁ।



# ଉଦ୍‌ଘାଟନ – ଉଦ୍‌ଯାପନ

କଲଢ଼ ମୂଲକର ଏକ ରାଜ୍ୟର ଗାଁ ଗଣ୍ଡାରେ ଗୋଟାଏ ସଂକ୍ରାମକ ବ୍ୟାଧି ବ୍ୟାପିଲା । ରାଜାଙ୍କ ଦରବାରରେ ଯେଉଁଦିନ ସେ ସମ୍ବାଦ ଆସି ପହଞ୍ଚିଲା, ସେଦିନ ସେଠାରେ ରାଜଗୁରୁ ଉପସ୍ଥିତ ଥିଲେ । ସେ ରାଜାଙ୍କୁ କହିଲେ, "ସଙ୍ଗେ ସଙ୍ଗେ ଏହି ରୋଗରେ ପୀଡ଼ିତ ବ୍ୟକ୍ତିଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଆରୋଗ୍ୟ ନିକେତନ ଖୋଲ ।"

ରାଜା ସେ ଦିଗରେ ଧ୍ୟାନ ଦେଲେ ନାହିଁ । କ୍ରମେ ରୋଗ ବ୍ୟାପିଲା । ଶେଷକୁ ଖୋଦ୍ ରାଜଧାନୀର କେତେଜଣ ବିଶିଷ୍ଟ ବ୍ୟକ୍ତି ଓ ରାଜାଙ୍କ ଶାଳକ ସେ ରୋଗର ଶିକାର ହେଲେ ।

ରାଜା ଆରୋଗ୍ୟ ନିକେତନ ନିର୍ମାଣ କଲେ । ବଣ ଭିତରେ ରାଜଗୁରୁ ଥାନ୍ତି । ରାଜା ଯାଇ ତାଙ୍କୁ ଭେଟିଲେ ଓ ସହରକୁ ଆସି ଆରୋଗ୍ୟନିକେତନ ଉଦ୍‌ଘାଟନ କରିବାକୁ ଅନୁରୋଧ କଲେ ।

କିନ୍ତୁ ଗୁରୁ କହିଲେ, "ରାଜା ! ଯେଉଁଦିନ ରୋଗ ସମ୍ପୂର୍ଣ୍ଣ ଲୁପ୍ତ ହେବ ଓ ତମର ଏ ବିଶେଷ ଆରୋଗ୍ୟନିକେତନ ବନ୍ଦ କରିବାର ସମୟ ଆସିବ, ସେଦିନ ମୋତେ ଡାକିବ । ମୁଁ ଯାଇ ତା'ର ଉଦ୍‌ଯାପନ ଉତ୍ସବରେ ପୌରହିତ୍ୟ କରିବି ।"

ରାଜା ବୁଝିଲେ, ବାସ୍ତବିକ ମୂଳରୁ ସେ ସଂକ୍ରାମକ ରୋଗର ପ୍ରସାରକୁ ରୋକିବା ଦରକାର ଥିଲା ।





# ଉତ୍ତର ରାମାୟଣ

ଶ୍ରୀରାମଙ୍କ ପ୍ରଶ୍ନର ଉତ୍ତର ଦେଇ ମହର୍ଷି ଅଗସ୍ତ୍ୟ କହିଲେ, "ମେରୁ ପର୍ବତର ଶିଖର ପ୍ରଦେଶସ୍ଥ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବ୍ରହ୍ମାଙ୍କ ସହିତ ଦେବଗଣଙ୍କର ସାକ୍ଷାତ୍ ହୁଏ । ଥରେ ଏକାନ୍ତରେ ବ୍ରହ୍ମା ସେଠାରେ ବସି ଧ୍ୟାନ କରୁଥା'ନ୍ତି । ସଚ୍ଚିଦାନନ୍ଦରେ ମଗ୍ନ ବ୍ରହ୍ମାଙ୍କ ଚକ୍ଷୁ ଯୁଗଳରୁ ଲୋତକ ଧାର ବହିବାକୁ ଲାଗିଲା; ଏବଂ ସେଇ ଲୋତକବିନ୍ଦୁରୁ ଜନ୍ମ ନେଲା ଏକ ବାନର ଶିଶୁ । ବ୍ରହ୍ମା ତାକୁ ସ୍ନେହ ଦୃଷ୍ଟିରେ ଚାହିଁ କହିଲେ, "ଯାଅ ବତ୍ସ, ମନ ଆନନ୍ଦରେ ବିଚରଣ କର ଓ ଏହି ପର୍ବତ-ମାନଙ୍କରେ ଥିବା ଫଳମୂଳ ଭକ୍ଷଣ କର ।"

ପିତାଙ୍କ ଆଦେଶ ପାଇ ବାନର ଶିଶୁ ସାରା ପର୍ବତ ବୁଲି ଫଳମୂଳ ଖୋଜି ଖାଏ ଓ ସନ୍ଧ୍ୟା ହେଲେ ବ୍ରହ୍ମାଙ୍କ ପାଖକୁ ଲେଉଟି ଆସେ । କ୍ରମେ ସେ ବଡ଼ ହୋଇଗଲା । ଏମିତି ଦିନେ ଜଙ୍ଗଲରେ ବୁଲି ବୁଲି ସେ ବ୍ରହ୍ମାଙ୍କ ଆସ୍ଥାନରୁ ବହୁ ଦୂରକୁ ଚାଲିଗଲା । ବୁଲି ବୁଲି ବଡ଼ ଥକା ହୋଇ ପଡ଼ିଥାଏ । ଅନତି ଦୂରରେ ଦେଖିଲା ଏକ ସରୋବର । ସ୍ୱଚ୍ଛ ଜଳରେ ଭରା । ପଦ୍ମ, କୁମୁଦ ସବୁ ପ୍ରସ୍ଫୁଟିତ ହୋଇ ସରୋବର ଶୋଭାକୁ ଦ୍ୱିଗୁଣିତ କରିଛନ୍ତି । ଚାରିପଟେରେ ବଡ଼ ବଡ଼ ଦ୍ରୁମ ଶୀତଳ ଛାୟା ପ୍ରଦାନ କରୁଛନ୍ତି । କ୍ଳାନ୍ତ ଓ ତୃଷିତ ବାନର ସେଠାକୁ ଜଳପାନ କରିବା ଉଦ୍ଦେଶ୍ୟରେ ଗଲା । ସେଠାରେ ପାଣି ଉପରେ ନିଜର ପ୍ରତିବିମ୍ବ ଦେଖି ସେ ଭାବିଲା ଯେ ଏଠାରେ ଆଉ ଏକ ବାନର ଅଛି । ତେଣୁ ସେ ସରୋବର ମଧ୍ୟକୁ



ଲମ୍ଫ ପ୍ରଦାନ କରି ବୁଡ଼ ବୁଡ଼, ସେହି ବାନରଟିକୁ ଖୋଜିଲା । ଖୋଜି ଖୋଜି ନ ପାଇ ଶେଷରେ ସେ ନିରାଶ ହୋଇ କୂଳକୁ ଫେରି ଆସିଲା ଓ ନିଜର ରୂପ ଦେଖି ମହା ବିସ୍ମୟରେ ବୁଡିଗଲା । ସେତେବେଳକୁ ସେ ଏକ ପରମା ରୂପବତୀ ନାରୀରେ ପରିଣତ ହୋଇ ସାରିଥାଏ । ସେହି ସରୋବରର ଗୁଣ ସେପରି ଥିଲା । ଯିଏ ସେଠାରେ ସ୍ନାନ କରିବ ସେ ନାରୀଦେହ ପ୍ରାପ୍ତ ହେବ ।

ଠିକ୍ ସେହି ସମୟରେ ବ୍ରହ୍ମସଭା ସାରି ଇନ୍ଦ୍ର ଓ ସୂର୍ଯ୍ୟ ଫେରୁଥିଲେ । ଦୁହିଁଙ୍କର ଆଖି ପଡ଼ିଲା ଏଇ ନାରୀଟି ଉପରେ । ଦୁହେଁ ହେଲେ ତା'ର ପ୍ରଣୟ ପ୍ରାର୍ଥୀ ଏବଂ ସେ ଦୁହିଁଙ୍କୁହିଁ ସ୍ୱୀକାର କଲା । ଫଳରେ ଜନ୍ମନେଲେ ବାଳୀ ଇନ୍ଦ୍ରଙ୍କ ପୁତ୍ର ରୂପେ ଓ ସୁଗ୍ରୀବ ସୂର୍ଯ୍ୟଙ୍କ ପୁତ୍ର ରୂପେ । ଇନ୍ଦ୍ର ନିଜ ପୁତ୍ର ବାଳୀକୁ ସ୍ୱର୍ଣ୍ଣକମଳର ହାର ଦେଲେ । ସୂର୍ଯ୍ୟ କିନ୍ତୁ ନିଜ ପୁତ୍ର ସୁଗ୍ରୀବକୁ ହନୁମାନ ସହିତ ଦେଖା କରାଇ ମିତ୍ର କରାଇଲେ । ଇତିମଧ୍ୟରେ ସେହି ନାରୀ ନିଜର ପୂର୍ବ ରୂପ ଫେରି ପାଇଲେ ଓ ଦୁଇ ପୁତ୍ରଙ୍କୁ ନେଇ ଆନନ୍ଦରେ ପାଳନ କଲେ । ସେହିଁ ଋକ୍ଷରାଜ ଯିଏ ବାଳୀ ଓ ସୁଗ୍ରୀବଙ୍କର ମା' ଓ ବାପା ଉଭୟ ଥିଲେ ।

ଅନେକ ଦିନ ପରେ ବ୍ରହ୍ମାଙ୍କ ଆଦେଶରେ ଋକ୍ଷରାଜ ଦୁଇପୁତ୍ରଙ୍କୁ ଧରି କିଷ୍କିନ୍ଧ୍ୟାରେ ପହଞ୍ଚିଲେ । ସେଠାରେ ସେ ବାନରମାନଙ୍କର ରାଜା ହୋଇ ରହିଲେ । କାଳକ୍ରମେ ପିତାଙ୍କ ମୃତ୍ୟୁ ପରେ ବାଳୀ ସେଠାରେ ରାଜା ହେଲା । ଅନ୍ୟ ସବୁ କଥା ତ ତୁମେ ଜାଣ ।"

ଅଗସ୍ତ୍ୟଙ୍କ କଥା ଶୁଣି ରାମ ଖୁବ୍ ଆନନ୍ଦିତ ହେଲେ । ରାମଚନ୍ଦ୍ରଙ୍କ ଅଭିଷେକ ପରେ ଅତିଥିମାନେ ବହୁଦିନ ପର୍ଯ୍ୟନ୍ତ ରହି ବହୁ ଆମୋଦ ପ୍ରମୋଦ କଲେ । ବାନରମାନେ ଯଥେଷ୍ଟ ଧନ, ମଣିମୁକ୍ତା ଇତ୍ୟାଦି ଉପଢୌକନ ନେଇ ନିଜ ରାଜ୍ୟକୁ ଚାଲିଗଲେ । ବିଭୀଷଣ ଓ ଅନ୍ୟ ରାକ୍ଷସମାନେ ମଧ୍ୟ ଅନେକ ଧନରତ୍ନ ନେଇ ଲଙ୍କାକୁ ଫେରିଗଲେ । ମହାରାଜା ଜନକ ଓ ମହାରାଜା କେକୟ କିଛିଦିନ ସେଠାରେ ଅବସ୍ଥାନ କରି ନିଜ ଦେଶକୁ ଫେରିଗଲେ ।



ଏବେ ରାମଚନ୍ଦ୍ର, ପ୍ରିୟତମା ପତ୍ନୀ ସୀତା, ପ୍ରିୟ ଅନୁଜଗଣ ଓ ବନ୍ଧୁଗଣଙ୍କ ସହିତ ଆନନ୍ଦରେ କାଳ କାଟିବାକୁ ଲାଗିଲେ । କିଛି ଦିନ ଉତ୍ତାରୁ ସୀତାଙ୍କର ଗର୍ଭଲକ୍ଷଣ ଦେଖା ଦେଲା । ଦିନେ ଶ୍ରୀରାମଚନ୍ଦ୍ର ସୀତାଙ୍କୁ ଜିଜ୍ଞାସା କଲେ, "ସୀତା, ଏବେ ତୁମ ମନ ଓ ହୃଦୟରେ ଯଦି କୌଣସି ଇଚ୍ଛା ଥାଏ କୁହ ମୁଁ ତାହାକୁ ପୂରଣ କରିବାକୁ ଚେଷ୍ଟା କରିବି ।"

ସୀତା ଲଜ୍ଜାବନତ ମୁଖରେ ଅଳ୍ପ ଅଳ୍ପ ହସି କହିଲେ, "ସ୍ୱାମୀ, ମୋର ସବୁ ଇଚ୍ଛା ଆପଣ ପୂରଣ କରିଛନ୍ତି । ବେଳେ ବେଳେ ମୋର ଇଚ୍ଛା ହୁଏ ଋଷିମୁନିଙ୍କ ଆଶ୍ରମ ଥରେ ଯାଇ ବୁଲି ଆସିବାକୁ । ଜୀବନ କଷ୍ଟଦାୟକ ମନେ ହେଲେ ମଧ୍ୟ ଅତ୍ୟନ୍ତ ମଧୁର ଓ ପବିତ୍ର ଥିଲା ।"

"ଆଚ୍ଛା । ଏପରି ଇଚ୍ଛା ତ ଅତି ପବିତ୍ର । ମୁଁ ତୁମର ବନବିହାର ଓ ଋଷିମୁନିଙ୍କ ଆଶ୍ରମ ବିହାର ପାଇଁ ଯଥାଶିଘ୍ର ବ୍ୟବସ୍ଥା କରି ଦେଉଛି ।" ଶ୍ରୀରାମ କହିଲେ ।

ତା'ପରେ ଶ୍ରୀରାମ ନିଜ ମିତ୍ର ଓ ବନ୍ଧୁମାନଙ୍କ ସହିତ ଦେଖା କରିବାକୁ ଗଲେ । ଆମୋଦ ପ୍ରମୋଦରେ କିଛି ସମୟ ବିତାଇବା ପରେ ଭଦ୍ର ନାମକ ଏକ ଗୁପ୍ତଚରକୁ ଶ୍ରୀରାମ ଏକାନ୍ତରେ ଡାକି ରାଜ୍ୟର ଖବର ଜିଜ୍ଞାସା କଲେ ।

ଭଦ୍ର ହାତଯୋଡି କହିଲେ, "ପ୍ରଭୁ, ପ୍ରଜାମାନେ ତ ଅନେକ କଥା ବିଚାର କରନ୍ତି । ସେଥିରେ କ'ଣ ମୂଲ୍ୟ ଅଛି ? ତେବେ ମୋଟା-ମୋଟି ସେମାନେ ଆପଣଙ୍କର ପ୍ରଶଂସାହିଁ କରନ୍ତି । ବେଶି ସମୟରେ ରାବଣର ଯୁଦ୍ଧ ଓ ରାବଣ ବଧ ଉପରେହିଁ ଚର୍ଚ୍ଚା କରନ୍ତି ।"

ଭଦ୍ରଙ୍କ କଥାରୁ ଶ୍ରୀରାମ ବୁଝିନେଲେ ଯେ ସେ କିଛି ଲୁଚାଇବାକୁ ଚେଷ୍ଟା କରୁଛନ୍ତି । ତେଣୁ ସେ କହିଲେ, "ଦେଖ ଭଦ୍ର, ତମର କାମ୍ ହେଉଛି ରାଜ୍ୟର ଭଲମନ୍ଦ ଉଭୟ ସମାଚାର ରାଜାଙ୍କୁ ଦେବା । ମୋର ମନେ ହେଉଛି ତୁମେ ସବୁ କଥା ମୋତେ ଖୋଲି କହୁନାହିଁ । ତୁମେ ମୋତେ ସବୁକଥା କହି ତୁମର କର୍ତ୍ତବ୍ୟ କର । ସେସବୁ ଅବଗତ ହୋଇ ମୁଁ ମଧ୍ୟ ମୋର କର୍ତ୍ତବ୍ୟ ଓ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିବି । ତୁମେ ନିର୍ଭୟରେ କୁହ ।"



"ମହାରାଜ ଆପଣ ରାବଣ ପରି ପ୍ରଚଣ୍ଡ ପ୍ରତାପୀ ରାକ୍ଷସକୁ ବଧ କରିଛନ୍ତି ସେଥିପାଇଁ ପ୍ରଜାବର୍ଗ ଆପଣଙ୍କର ଯଶୋଗାନ କରୁଛନ୍ତି । କିନ୍ତୁ ଚନ୍ଦ୍ରରେ କଳଙ୍କ ନ୍ୟାୟ ଆପଣଙ୍କର ସମସ୍ତ ପ୍ରକାର ଯଶୋଗାନ ମଧ୍ୟରେ ଗୋଟିଏ ମାତ୍ର ବିଷୟରେ ସେମାନେ ସନ୍ଦେହ ପ୍ରକାଶ କରୁଛନ୍ତି । ସେଇଟା ହେଉଛି ସୀତାଙ୍କୁ ପୁନଃଗ୍ରହଣ କରିବାରେ । ସେମାନେ କୁହନ୍ତି ଯେଉଁ ସୀତା ରାକ୍ଷସ ନଗରରେ ଏତେଦିନ ରହି ଆସିଲେ ତାଙ୍କୁ ରଘୁବଂଶର ଶ୍ରେଷ୍ଠ ବିବେକୀ ରାଜା ରାମ କିପରି ପୁଣି ଗ୍ରହଣ କଲେ ଓ ତାଙ୍କୁ ମହାରାଣୀ କଲେ ?" ଭଦ୍ର କହିଲେ ।

ଭଦ୍ରଙ୍କ ମୁଖରୁ ଏହି ହୃଦୟ ବିଦାରକ ବାଣୀ ଶୁଣି ରାମ ଅତ୍ୟନ୍ତ ବ୍ୟଥିତ ଓ ବ୍ୟାକୁଳ ହେଲେ । କିଛିକ୍ଷଣ ନୀରବ ରହି ରାମ ଭଦ୍ରଙ୍କୁ କହିଲେ, "ଭଦ୍ର, ଯାଅ ମୋର ତିନିଭାଇଙ୍କୁ ମୋ ନିକଟକୁ ଆସିବାକୁ କୁହ ।"

ଆଜ୍ଞା ପାଇବା ମାତ୍ରେ ଭଦ୍ର ତିନିଭାଇଙ୍କୁ ଖବର ଦେଲେ ଓ ସେମାନେ ଅନତିବିଳମ୍ବେ ସେଠାରେ ଉପସ୍ଥିତ ହେଲେ । ସେମାନେ ଦେଖିଲେ ରାମଙ୍କ ଚକ୍ଷୁଦ୍ୱୟ ଅଶ୍ରୁସଜଳ ଓ ମୁଖ ବିବର୍ଣ୍ଣ । ସେମାନଙ୍କୁ ରାମ ଆଲିଙ୍ଗନ କରି ଆସନରେ ବସାଇଲେ ଓ ସମସ୍ତ କଥା କହିଲେ । ଶେଷରେ ସେ କହିଲେ, "ସୀତାଙ୍କର ଅଗ୍ନିପରୀକ୍ଷା ପରେ ଏପରି ଅପବାଦ ମୁଁ ସହ୍ୟ କରିପାରୁ ନାହିଁ । ମୋର ହୃଦୟ ବ୍ୟାକୁଳ ହେଉଛି, ମନ ଅସ୍ଥିର ହେଉଛି । ମୁଁ ନିଜର ଜୀବନ ଉତ୍ସର୍ଗ କରିପାରେ, ମୋର ପ୍ରିୟ ଭାଇମାନଙ୍କୁ ମଧ୍ୟ ତ୍ୟାଗ କରିପାରେ, ସୀତଙ୍କୁ ତ୍ୟାଗ କରିପାରେ କିନ୍ତୁ ରଘୁକୁଳରେ ଓ ପବିତ୍ର ସୂର୍ଯ୍ୟବଂଶରେ ଏ ଅପଯଶ ମୁଁ ସହ୍ୟ କରି ନପାରେ । ତେଣୁ ମୁଁ ମନସ୍ଥ କରିଛି ଏ କ୍ଷେତ୍ରରେ ସୀତାଙ୍କୁହିଁ ପରିତ୍ୟାଗ କରାଯିବ ।"

ଏକାବେଳେକେ ଯେପରି ଶତବଜ୍ରପାତ ହେଲା । ଭାଇମାନଙ୍କ ମୁହଁରୁ କୌଣସି ବାକ୍ୟ ସ୍ଫୁରୁ ନାହିଁ । ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ରଙ୍କ ନିଷ୍ପତ୍ତି ଉପରେ ଆଉ କିଏ ବା କଣ'



କହିବ । ସମନ୍ତ୍ରେ କାଠପିତୁଲା ପରି ବସି ରହିଥା'ନ୍ତି ।

ଶ୍ରୀରାମ ପୁଣି କହିଲେ, "ଲକ୍ଷ୍ମଣ, ତୁମେହିଁ ମୋର ଦୁଃଖ ଆନନ୍ଦର ସାଥି, ତୁମେ ମୋତେ ସବୁଠାରୁ ଘନିଷ୍ଠ ଭାବରେ ଦେଖିଛ ଓ ଭଲଭାବରେ ବୁଝିପାରିବ ମୋର ଅନ୍ତରର ବ୍ୟାକୁଳତା । ଦେବୀ ସୀତାଙ୍କୁ ମୁଁ ପଚାରିଥିଲି ଗର୍ଭବାସ ସମୟରେ କୌଣସି ଇଚ୍ଛା ହେଉଥିଲେ କହିବାକୁ, ତେବେ ତାହା ପୂରଣ କରାଯିବ । ସେ କହିଲେ ସେ ଗୃହାନ୍ତ ଋଷି-ମୁନିଙ୍କ ଆଶ୍ରମକୁ ବୁଲିଯିବାକୁ । ଏସବୁ ବିଷୟ କିଛି ତାଙ୍କୁ ନ କହି, କାଲି ସକାଳୁ ତାଙ୍କୁ ରଥରେ ବସାଇ ନେଇ ମୁନି ଆଶ୍ରମରେ ଛାଡ଼ି ଦେବ । ଗଙ୍ଗାତୀରରେ ଅନେକ ମୁନିଋଷିଙ୍କର ଆଶ୍ରମ । ବାଲ୍ମୀକିଙ୍କର ପରମ ପବିତ୍ର ଆଶ୍ରମରେ ସେ ଆଶ୍ରୟ ନେଇ ପାରିବେ । ଏହାହିଁ ବୋଧହୁଏ ଆମ ପାଇଁ ବିଧି ନିର୍ଦ୍ଦିଷ୍ଟ ।" ଏହି ଆଜ୍ଞା ଥିଲା ଜ୍ୟେଷ୍ଠଭ୍ରାତା ରାମଚନ୍ଦ୍ରଙ୍କର ନୁହେଁ ବରଂ ରାଜା ରାମଚନ୍ଦ୍ରଙ୍କର, ଲକ୍ଷ୍ମଣ ତଥା ଅନ୍ୟ ଭାଇମାନଙ୍କର ରାମ ଥିଲେ ପ୍ରିୟତମ । କିନ୍ତୁ ସୀତାଙ୍କୁ ପରିତ୍ୟାଗ କରିବା ଭଳି ନିଷ୍ଠୁର କାର୍ଯ୍ୟ କରିବାକୁ ହେବ । ତେଣୁ ଲକ୍ଷ୍ମଣଙ୍କ ଅବସ୍ଥା ଥିଲା ଦାରୁଣ ଦୁଃଖ, ଓ ଯନ୍ତ୍ରଣାରେ ପୂର୍ଣ୍ଣ ।

ପରଦିନ ସକାଳୁ ସୁମନ୍ତ୍ରଙ୍କୁ ରଥ ପ୍ରସ୍ତୁତ କରିବାକୁ ଲକ୍ଷ୍ମଣ କହିଲେ । ରଥ ପ୍ରସ୍ତୁତ ହେଲା । ତା'ପରେ ଲକ୍ଷ୍ମଣ ଯାଇ ସୀତାଙ୍କୁ କହିଲେ, "ଆପଣ ମୁନିଋଷିଙ୍କ ଆଶ୍ରମ ଭ୍ରମଣ କରିବାର ଇଚ୍ଛା ପ୍ରକାଶ କରିଥିଲେ, ରଥ ପ୍ରସ୍ତୁତ । ଚାଲନ୍ତୁ ଶୀଘ୍ର ଯିବା ।"

ସୀତା ବହୁତ ଖୁସି ହେଲେ । ଋଷିମାନଙ୍କ ପାଇଁ ଓ ଋଷିକନ୍ୟାମାନଙ୍କ ପାଇଁ ନାନାବିଧ ଉପହାରମାନ ସଙ୍ଗରେ ନେଇଗଲେ । ରଥ କିଛିଦୂର ଯିବା ପରେ ସୀତା କହିଲେ, "ଲକ୍ଷ୍ମଣ, ମୁଁ କିଛି ଅମଙ୍ଗଳସୂଚକ ଚିହ୍ନମାନ ଦେଖୁଛି । ମାତାମାନଙ୍କ ଦେହ କିଛି ଖରାପ ହୋଇନାହିଁ ତ ? ତୁମ ମୁଖମଣ୍ଡଳ ଏତେ ବିଷାଦାଚ୍ଛନ୍ନ କାହିଁକି ? ମୋ ମନ ଏସବୁ ଦେଖି କୌଣସି ଏକ ଅଜଣା ଆଶଙ୍କାରେ ବ୍ୟାକୁଳିତ ହେଉଛି ।"



ଲକ୍ଷ୍ମଣ ଅନ୍ତରର କଷ୍ଟକୁ ପ୍ରକଟ ନ କରି କହିଲେ, "ସବୁ ଠିକ୍ ଅଛି ।" କିଛି ସମୟ ପରେ ରଥ ଯାଇ ଗଙ୍ଗା ତଟରେ ପହଞ୍ଚିଲା । ଗଙ୍ଗାଙ୍କୁ ଦେଖି ଲକ୍ଷ୍ମଣ ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ । ଆଖିରୁ ଝରଝର ହୋଇ ଲୁହ ବୋହିବାକୁ ଲାଗିଲା । ଲକ୍ଷ୍ମଣଙ୍କର ଏ ଅବସ୍ଥା ଦେଖି ସୀତା ବ୍ୟସ୍ତ ହୋଇ ପଚାରିଲେ, "ଲକ୍ଷ୍ମଣ, କଥା କ'ଣ ? ତମେ ମୋତେ କିଛି କହୁନାହଁ । କାନ୍ଦୁଛ କାହିଁକି ?

ଲକ୍ଷ୍ମଣ ନୀରବ ରହିଲେ ଓ ଏକ ନାବିକକୁ ଡାକି ନୌକା ଆଣିବାକୁ କହିଲେ । ସୁମନ୍ତ ଓ ରଥ ଏପଟେ ରହିଲା । ଲକ୍ଷ୍ମଣ ଓ ସୀତା ନୌକାରେ ବସି ଗଙ୍ଗାର ଅପର ତଟକୁ ଗଲେ । ଏବେ ସମସ୍ତ କଥା ଖୋଲି କହିବାର ଉପଯୁକ୍ତ ସମୟ ଉପସ୍ଥିତ । ଲକ୍ଷ୍ମଣଙ୍କୁ ସେହି ନିଷ୍ଠୁର କର୍ତ୍ତବ୍ୟ ପାଳନ କରିବାକୁ ହେବ । ସେ ସୀତାଙ୍କର ତପସ୍ୟା ଦେଖିଛନ୍ତି, ଶ୍ରୀରାମଙ୍କ ପ୍ରତି ତାଙ୍କର ପ୍ରେମ ଦେଖିଛନ୍ତି । ତାଙ୍କର ପବିତ୍ରତା ବିଷୟରେ ସନ୍ଦେହ କରିବା ମୂର୍ଖତା ! ସେ ବହୁତ କଷ୍ଟରେ ଅଶ୍ରୁ ସମ୍ବରଣ କରି ହାତ ଯୋଡ଼ି କହିଲେ, "ଦେବୀ, ମୋର ଜ୍ୟେଷ୍ଠଭ୍ରାତା ମୋ ହୃଦୟରେ ଶୂଳବିଦ୍ଧ କରିଛନ୍ତି । ତା' ପୂର୍ବରୁ ମୋର ମୃତ୍ୟୁହିଁ ମୋ ପାଇଁ ଶ୍ରେୟ ଥିଲା ।" ଏତିକି କହି ସେ କାନ୍ଦି କାନ୍ଦି ଲୋଟି ପଡିଲେ ।

ସୀତା ଲକ୍ଷ୍ମଣଙ୍କର ଏ ଅବସ୍ଥା ଦେଖି ବ୍ୟସ୍ତ ହୋଇ କହିଲେ, "କ'ଣ ତୁମେ କହୁଛ ମୁଁ କିଛି ବୁଝିପାରୁ ନାହିଁ । ମୋତେ ଖୋଲି କରି ସ୍ପଷ୍ଟ କୁହ ତୁମର ଏ ବ୍ୟଥାର କାରଣ କ'ଣ ?"

ସେତେବେଳେ ଲକ୍ଷ୍ମଣ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ମହାରାଜ ରାମଚନ୍ଦ୍ର ଯେତେବେଳେ ଆପଣଙ୍କ ବିଷୟରେ ମିତ୍ର ଓ ରାଜପରିଷଦ ମାନଙ୍କ ସହିତ ଆଲୋଚନା କରୁଥିଲେ ସେତେ-ବେଳେ ଆପଣଙ୍କ ବିଷୟରେ ଲୋକାପବାଦ ସେ ଶୁଣିଲେ । ସେସବୁ ଆପଣଙ୍କର ଶୁଣିବା ଦରକାର ନାହିଁ । ସେଥିରେ ସେ ବ୍ୟଥିତ ହୋଇ ମନସ୍ଥ କଲେ କି ରାଜ୍ୟ ପାଇଁ, ପ୍ରଜାଙ୍କ ପାଇଁ ଓ ରଘୁବଂଶ ତଥା ସୂର୍ଯ୍ୟବଂଶର ସମ୍ମାନ ପାଇଁ ସେ ଆପଣଙ୍କ ପରି ପ୍ରିୟତମା ନିର୍ଦ୍ଦୋଷୀ ପତ୍ନୀଙ୍କୁ ତ୍ୟାଗ କରିବେ, କାରଣ ସୂର୍ଯ୍ୟବଂଶ-

ତଳେକ ଶ୍ରୀରାମ ସମସ୍ତଙ୍କୁ ତ୍ୟାଗ କରିପାରିବେ କିନ୍ତୁ କୌଣସି ଅପବାଦସୂଚକ ଆକ୍ଷେପ ସହ୍ୟ କରିପାରିବେ ନାହିଁ । ତେଣୁ ସେ ସେହି ନିଦାରୁଣ କାର୍ଯ୍ୟ ମୋର ଦ୍ୱାରାହିଁ କରାଇଲେ । ଏବେ ମୁଁ ଅଯୋଧ୍ୟା ଫେରି ଯିବି । ଆପଣ ମୁନିଋଷିଙ୍କ ଆଶ୍ରମରେ ରହି ପୁଣ୍ୟମୟ ଜୀବନ ବିତାଇବେ । ମହାମୁନି ବଲ୍ମୀକିଙ୍କ ଆଶ୍ରମ ଅଦୂରରେ ଅବସ୍ଥିତ । ସେ ରାଜର୍ଷି ଜନକଙ୍କ ପ୍ରିୟ ମିତ୍ର । ସେ ଅବଶ୍ୟ ଆନନ୍ଦପୂର୍ବକ ଆପଣଙ୍କୁ ନିଜ ଆଶ୍ରମରେ ରହିବାର ସମସ୍ତ ବ୍ୟବସ୍ଥା କରିବେ ।"

ଲକ୍ଷ୍ମଣଙ୍କ ମୁଖରୁ ସେହି ଭୟଙ୍କର ଶବ୍ଦ ସବୁ ଶୁଣି ସୀତାଙ୍କୁ ଲାଗିଲା ତାଙ୍କ ମଥା ଉପରେ ଆକାଶ ଭାଙ୍ଗି ପଡୁଛି । ନଦୀ ଶୁଖି ଯାଉଛି, ପୃଥିବୀ ବିଦୀର୍ଣ୍ଣ ହୋଇଯାଉଛି ଓ ପବନ ବନ୍ଦ ହୋଇଯାଉଛି, ଆଉ ତାଙ୍କ ହୃଦୟ ଯେପରି ଏକ ବିରାଟ ମରୁଭୂମିରେ ପରିଣତ ହୋଇଛି । ସେ କିଛି ସମୟ ପରେ ନିଜକୁ ସମ୍ଭାଳି ନେଇ କହିଲେ, "ଲକ୍ଷ୍ମଣ, ମନେହୁଏ ମୁଁ ବୋଧହୁଏ ଦୁଃଖ ସହିବା ପାଇଁ ପୃଥିବୀରେ ଜନ୍ମ ହୋଇଛି, ବନବାସ କଷ୍ଟ ମୁଁ କଷ୍ଟ ବୋଲି ଭାବି ନଥିଲି କାରଣ ଶ୍ରୀରାମଙ୍କ ସହିତ ମୁ ଥିଲି । କିନ୍ତୁ ଏବେ ରାମଙ୍କ ବ୍ୟତୀତ ମୋର ଏ ଦୁଃଖ ଏ ବ୍ୟଥା ମୁଁ କାହାକୁ ଶୁଣାଇବି ? ମୁନିଗଣ ମୋତେ ଏସବୁର କାରଣ ପଚାରିଲେ ମୁଁ କି ଉତ୍ତର ଏହାର ଦେବି ? ମୋର ମନେ ହେଉଛି ମୁଁ ଗଙ୍ଗାରେ ଝାସ ଦେଇ ପ୍ରାଣ ହରାଇ ଦିଅନ୍ତି । କିନ୍ତୁ ରଘୁବଂଶର ଯେଉଁ ସନ୍ତାନକୁ ମୋର ଗର୍ଭରେ ଧାରଣ କରିଛି ସେ ବିନାଶ ପ୍ରାପ୍ତ ହେବ । ସେ ପାପ ମୁଁ କିପରି କରିବି । ମାତାମାନଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ କହିବ । କନିଷ୍ଠମାନଙ୍କୁ ସ୍ନେହ ଜଣାଇବ, ରାଜା ରାମଙ୍କୁ କହିବ ତାଙ୍କର କଳଙ୍କ ପୋଛିଦେବା ମୋର କର୍ତ୍ତବ୍ୟ । ରଘୁବଂଶର ସମ୍ମାନ ରହୁ । ମୁଁ ପଛେ କଷ୍ଟ ସହେ । ସେ ବିଶ୍ୱବ୍ରହ୍ମାଣ୍ଡରେ ଅଦ୍ୱିତୀୟ ରାଜା ରୂପେ ଯଶସ୍ୱୀ ହୁଅନ୍ତୁ ।"





# ମତ୍ସ୍ୟ କନ୍ୟା!

ନଗରପୁରର ଯୁବକ ରାଜାଙ୍କର କ'ଣ ହୋଇଥାଏ କେଜାଣି, ସେ ସର୍ବଦା ଉଦାସୀନ ରହୁଥାନ୍ତି । ରାଜ୍ୟର ହାନିଲାଭରେ ତାଙ୍କର କୌଣସି ଆଗ୍ରହ ନଥାଏ । ମନ୍ତ୍ରୀ ବା ଅମାତ୍ୟମାନେ ତାଙ୍କ ପାଖକୁ କୌଣସି ସମସ୍ୟା ଧରି ଆସିଲେ ସମସ୍ୟାର ସମାଧାନ ଦିଗରେ ସେମାନଙ୍କ ସହ ଆଲୋଚନା କରିବା ତ ଦୂରର କଥା, ସେମାନେ ଯେପରି ଶୀଘ୍ର ବିଦାୟ ହେବେ, ସେ ସେହିପରି ଭାବରେ ସେମାନଙ୍କ ସହ ବ୍ୟବହାର କରୁଥାନ୍ତି ।

ରାଜାଙ୍କର କୌଣସି ବେମାର ନଥାଏ ଯେ ବୈଦ୍ୟମାନେ ତାଙ୍କୁ ଚିକିତ୍ସା କରିବେ ! ତାଙ୍କର ମନ ଖୁସି କଲାଭଳି କେହି ମଣିଷ ତାଙ୍କ ଦରବାରରେ ନଥାନ୍ତି । ଅମାତ୍ୟ, ମନ୍ତ୍ରୀ ଓ କର୍ମଚାରୀ, ଏମାନଙ୍କ ସହ କଥା ହେବାକୁ ତାଙ୍କୁ ବିରକ୍ତ ଲାଗୁଥାଏ ।

ଦିନେ ରାଜା ବଗିଚାରେ ବୁଲୁଛନ୍ତି, ଜଣେ ପରିଚାରକ ଆସି ତାଙ୍କୁ କହିଲା, "ପ୍ରଭୁ! ଜଣେ ଧୀବର ଟୋକା ଆପଣଙ୍କୁ ଭେଟିବାକୁ ଚାହେଁ ।"

"ମୋ ସାଙ୍ଗରେ ଧୀବର ଟୋକାର କ'ଣ ଦରକାର? ତାକୁ କହ ସେ ମନ୍ତ୍ରୀଙ୍କୁ ଦେଖା କରିବ, ନହେଲେ ଆଗାମୀ କାଲି ଦରବାରକୁ ଆସିବ ।" ରାଜା କହିଲେ ।

"ପ୍ରଭୁ! ତାକୁ ମୁଁ ସେକଥା କହିଛି । କିନ୍ତୁ ସେ କହୁଛି କି ତା'ର କିଛି କଥା ଅତ୍ୟନ୍ତ ଗୋପନରେ ଆପଣଙ୍କୁ କହିବାର ଅଛି ।" ପରିଚାରକ ଜଣାଇଲା ।

ରାଜା ପରିଚାରିକା ଆଡ଼େ ଅନାଇଲେ । ସେ ଝିଅଟି ରାଜାଙ୍କ ରୋଷେଇ ଘରେ କାମ କରୁଥାଏ । ଝିଅଟିର ବୁଦ୍ଧି ବିବେକ ଭଲ ବୋଲି ରାଜା ଜାଣିଥାନ୍ତି । ତେଣୁ ସେ ଯାହା

ସୁରେନ୍ଦ୍ର



ବିଷୟରେ କହୁଛି, ସେ ଲୋକର କିଛି ବିଶେଷତ୍ୱ ଥିବ ବୋଲି ସେ ମନେ କଲେ ।

"ବେଶ୍ । ତାକୁ ପଠାଇ ଦିଅ ।" ରାଜା ନିର୍ଦ୍ଦେଶ ଦେଲେ ।

ଧୀବର ଟୋକା ଆସି ରାଜାଙ୍କୁ ଲମ୍ବ ଜୁହାର ପକାଇଲା ଓ କହିଲା, "ପ୍ରଭୁ! ଗରିବ ଧୀବର ଟୋକା କି ଆପଣଙ୍କୁ ଦେଖା କରିବାକୁ ସାହସ କରନ୍ତି? ଆପଣ ଗତ କାଲି ଦିବାହାର ବେଳେ ରାଣୀଙ୍କୁ ଦୁଇଥର ପାୟସ ମାଗିଲେ ବୋଲି ସିନା ମୁଁ ଦେଖାକଲି!"

ରାଜା ଆଶ୍ଚର୍ଯ୍ୟ ହୋଇ ଅନାଇଲେ । ଟୋକା କ'ଣ ପାଗଳ? କିନ୍ତୁ ସେ ଯେ ଦୁଇଥର ପାୟସ ମାଗିଥିଲେ, ଏହା ସତ କଥା । କିନ୍ତୁ ତାଙ୍କର ଏପରି ଅଭ୍ୟାସ, ସେ ମଣୋହିରେ ବସିଲା ବେଳେ ରାଣୀ ଛଡ଼ା ପାଖରେ ଆଉ କେହି ରହନ୍ତି ନାହିଁ । ପରିଚାରିକାମାନେ କୋଠରୀ ବାହାରେ ରହିଥାନ୍ତି । ଏ ଟୋକା ସେକଥା ଜାଣିଲା କିପରି ?

ଟୋକା ପୁଣି କହିଲା, "ରାତିରେ ଆପଣ ଖାଇ ବସିଲା ବେଳେ ଆପଣଙ୍କ ହାତରେ ମଶାଟିଏ ବସିବାର ଦେଖି ରାଣୀ ଆପଣଙ୍କ ହାତରେ ତାଙ୍କ ହାତ ବାଡେଇ ଦେଲେ···"

ଏକଥା ବି ସତ! ରାଜା ନିଜ ବିସ୍ମୟ ଦମନ କରି ପଚାରିଲେ, "ତମେ କହୁଛ କ'ଣ? ତମେ ଏସବୁ ଜାଣିଲ କିପରି? ଏସବୁ ସହ ତମେ ଆସି ମୋତେ ଭେଟିବାର ସମ୍ପର୍କ କ'ଣ?"

"ପ୍ରଭୁ! ଏସବୁ ସତ କି? ତା'ହେଲେ ତ ଆପଣଙ୍କୁ ଭେଟି ମୁଁ ଠିକ୍ କରିଛି! କଥା କ'ଣ କି, ମୋ ଘର ଏଠାରୁ ପାଞ୍ଚକୋଶ ଦୂରରେ । ନଈ ଆର ପାରିରୁ ଆମ ଗାଁ । ବିଜୟପୁର ପର୍ଯ୍ୟନ୍ତ ରାସ୍ତାରେ ଆଣ୍ଠୁଏ ଲେଖାଏଁ କାଦୁଅ । ବହୁତ କଷ୍ଟ କରି ଏଠାକୁ ଆସିଲି । କିନ୍ତୁ ମୁଁ ଯାହା ଦେଖିଲି, ଆପଣଙ୍କୁ ସେକଥା ନ ଜଣାନ୍ତି କିପରି?"

"ତମେ କ'ଣ ଦେଖିଲ?" ରାଜା ଅଧୈର୍ଯ୍ୟ ହୋଇ ପଚାରିଲେ ।

"ଆଜ୍ଞା, ପ୍ରଥମେ ତାକୁ କାଲି ରାତିରେ ଦେଖିଥିଲି ଦରବାରଙ୍କ ମୁହାଣଠାରେ ।

ତା'ପରେ ଥରେ ଦେଖିଥିଲି ମଧୁପୁର ଆଗ ସମୁଦ୍ର କୂଳରେ । ଗତକାଲି ଦେଖିଲି ଖାସ୍ ମୋ ଗାଁ ତୋଟା ଓ ସମୁଦ୍ର ବାଲି ମଝିରେ ।"

"ତମେ କ'ଣ କହୁଛ ମୁଁ ବୁଝି ପାରୁନାହିଁ !" ରାଜା କହିଲେ ।

"ପ୍ରଭୁ ! ମୁଁ ଯେତେବେଳେ ତାକୁ ଦେଖିଲି, ସେତେବେଳେ କ'ଣ ସେ କିଏ ସେକଥା ସହଜରେ ବୁଝି ପାରିଲି ? ପ୍ରଥମେ ଯେତିକି ଆଶ୍ଚର୍ଯ୍ୟ ଲାଗିଲା, ସେତିକି ଡର ବି ଲାଗିଲା ।" ଆଗନ୍ତୁକ କହିଲା ।

"କାହାକୁ ଦେଖିଲ ?"

"ମତ୍ସ୍ୟ କନ୍ୟାକୁ ଆଜ୍ଞା । ଅଣ୍ଟାଠୁଁ ତଳଯାଏ ମତ୍ସ୍ୟ; ଅଣ୍ଟାଠୁଁ ଉପରଯାଏ ସୁନ୍ଦରୀ ମାନବ କନ୍ୟା । ମୋ ସହ ଗପସପ ହେଲା । ମୁଁ କହିଲି କି ତମେ ତ ସମୁଦ୍ରରେ ଥାଅ । ମଣିଷଙ୍କ ହାଲ କ'ଣ ଜାଣିବ ? ସେ ସେଇଠୁ କହିଲା କି ସେ ସବୁ ଜାଣେ—ଏପରିକି ରାଜା ଦୁଇଥର ପାୟସ ମାଗିବା ଓ ରାଣୀ ମଣ୍ଡା ତିଆରି କରିବା ପର୍ଯ୍ୟନ୍ତ ! ସାବାସ୍ ! ମୁଁ ମନେ ମନେ ଭାବିଲି, ଯାଏଁ, ରାଜାଙ୍କୁ କହି ଆସେଁ ।" ଧୀବର ଟୋକା କହିଲା ।

ରାଜା ଖୁସି ହୋଇ ଜଣେ କର୍ମଚାରୀଙ୍କୁ ଡାକି ଟୋକାକୁ ଶହେ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେଲେ ଓ କହିଲେ, "ଆମେ ଯଥାଶୀଘ୍ର ତମ ଗାଁରେ ଯାଇ ଡେରା ପକାଇବା ।"




ପରଦିନଠୁଁ ବିଜୟପୁର ଗାଁକୁ ସଡ଼କ ନିର୍ମାଣ କାମ ଆରମ୍ଭ ହୋଇଗଲା । ସାତଦିନ ଭିତରେ କାମ ଶେଷ ହେଲା । ବହୁଦିନ ପରେ ରାଜାଙ୍କ ମନରେ ଆଗ୍ରହ ଓ କୌତୁହଳ ଦେଖା ଦେଲା । ମତ୍ସ୍ୟ କନ୍ୟାମାନଙ୍କ ବିଷୟରେ ସେ କେତେ କାହାଣୀ ଶୁଣିଥିଲେ । କିନ୍ତୁ ମତ୍ସ୍ୟ କନ୍ୟାକୁ ଦିନେ ସତ ସତ ଦେଖିବାର ସୁଯୋଗ ମିଳିବ, ସେକଥା ସେ ସ୍ୱପ୍ନରେ ମଧ୍ୟ ଭାବି ନଥିଲେ ।

ସଡ଼କ କାମ ଶେଷ ହେବାର ଖବର ପାଇବା ମାତ୍ରେ ସେ ବିଜୟପୁର ଯିବାକୁ ପ୍ରସ୍ତୁତ ହେଲେ । ରାଜାଙ୍କ ରଥ ଯାଇ ସେଠାରେ ପହଞ୍ଚିଲା । ସେଠି ବି ତୋଟାରେ



ସୁନ୍ଦର ଛାଉଣୀ ପଡ଼ିଲା । ରାଜା ଯାଇ ସେଠାରେ ଦୁଇଦିନ ରହିଲେ ଓ ଅନେକ ବେଳଯାଏ ବେଳାଭୂମିକୁ ଅନାଇ ରହିଲେ । କିନ୍ତୁ କାହିଁ ମତ୍ସ୍ୟ କନ୍ୟା ?

ରାଜା ମଧ୍ୟେ ମଧ୍ୟେ ଗାଁ ଭିତରକୁ ଗଲେ ଲୋକେ ଶହ ଶହ ସଂଖ୍ୟାରେ ଜୁହାର ହୁଅନ୍ତି ଓ ଗାଁକୁ ରାସ୍ତା କରିଦେଇଥିବା ଯୋଗୁଁ କୃତଜ୍ଞତା ଜଣାନ୍ତି । ରାଜା ହସି ହସି ସେମାନଙ୍କ ସହ ଗପସପ କରନ୍ତି । ଅବଶ୍ୟ ରାଜା କାହିଁକି ସେଠାରେ ଡେରା ପକାଇଛନ୍ତି, ସେକଥା ସେମାନେ ଜାଣି ନଥିଲେ ।

ତୃତୀୟ ଦିନ ରାଜା ଧୀବର ଟୋକାକୁ କହିଲେ, "କାହିଁ ମତ୍ସ୍ୟ କନ୍ୟା ?"

"ଛାମୁ! ହୁଏତ ଦଣ୍ଡବାଙ୍କି ମୁହାଣଠିଁ ବା ମଧୁପୁରଠିଁ ଦେଖାଯାଇ ପାରେ!" ଟୋକା କହିଲା ।

ରାଜା ଡେରା ଉଠାଇ ଏ ଉଭୟ ସ୍ଥାନକୁ ଗଲେ । ଲୋକେ ରାଜାଙ୍କର ଜୟଧ୍ୱନି କରୁଥାନ୍ତି । ରାଜା ବି ଲୋକଙ୍କ ସହ ମିଶି ବହୁତ ଖୁସି ହେଉଥାନ୍ତି । ସେମାନଙ୍କ ଅଭାବ ଅସୁବିଧା ସବୁ ବୁଝୁଥାନ୍ତି । ସଙ୍ଗେ ସଙ୍ଗେ ଅସୁବିଧା ଦୂର କରିବା ଦିଗରେ ବ୍ୟବସ୍ଥା ବି କରୁଥାନ୍ତି ।

ଅନେକ ସ୍ଥାନରେ ସେ ବିଦ୍ୟାଳୟ ଖୋଲିବାର ବ୍ୟବସ୍ଥା କଲେ । କେତେକ ସ୍ଥାନରେ ଚିକିତ୍ସାଳୟମାନ ପାଇଁ ସେ ଅର୍ଥ ମଞ୍ଜୁର କଲେ ।

ଲୋକେ ରାଜାଙ୍କୁ ଆଣି କେତେ ପ୍ରକାର ଫଳ ଫୁଲ ଭେଟି ଦେଉଥାନ୍ତି । ରାଜା ଆସି ସେମାନଙ୍କ ପାଖରେ ଡେରା ପକାଇ ରହିଛନ୍ତି, ଏଥିରେ ସେମାନଙ୍କ ଆନନ୍ଦର ସୀମା ନଥାଏ । ସେମାନଙ୍କ ଆନନ୍ଦ ଦେଖି ରାଜା ବି ଆନନ୍ଦିତ ହେଉଥାନ୍ତି । ରାଜାଙ୍କର ମତ୍ସ୍ୟ କନ୍ୟା କଥା ସବୁବେଳେ ମନେ ରହୁ ନଥାଏ ।

ଦଣ୍ଡବାଙ୍କି ଓ ମଧୁପୁରଠିଁ ଦୁଇ ଦୁଇଦିନ ରହିବା ପରେ ରାଜା ଉଆସକୁ ଫେରିଗଲେ । କିନ୍ତୁ ତହିଁ ପରଠାରୁ ତାଙ୍କ ମନୋଭାବ ବଦଳି ଗଲା । ସେ ମଧ୍ୟେ ମଧ୍ୟେ ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳକୁ ଯିବାକୁ ଲାଗିଲେ, ଲୋକଙ୍କ ସୁବିଧା

ଅସୁବିଧା ବୁଝିବାକୁ ଲାଗିଲେ । ରାଜ୍ୟରେ ଏତେ ସୁନ୍ଦର ପ୍ରାକୃତିକ ସ୍ଥାନମାନ ଅଛି ବୋଲି ସେ ପୂର୍ବରୁ ଜାଣି ନଥିଲେ । ସେ ବର୍ତ୍ତମାନ ସେସବୁ ସ୍ଥାନମାନ ବୁଲିବାକୁ ଗଲେ । ରାଜକାର୍ଯ୍ୟରେ ବି ସେ ବିଶେଷ ଉତ୍ସାହ ଦେଖାଇଲେ । ମତ୍ସ୍ୟ କନ୍ୟା କଥା ଅବଶ୍ୟ ସେ ବର୍ଷକ ଭିତରେ ଭୁଲିଗଲେ ।

ଦୁଇବର୍ଷ ପରେ ତାଙ୍କ ନଅରର ଗୋଟିଏ ପରିଚାରିକା ସହ ସେ ଧୀବର ଟୋକାର ବିବାହ ହେଲା । ଦୁହିଙ୍କ ଘର ଗୋଟିଏ ଗାଁରେ । ସେତେବେଳକୁ ରାଜାଙ୍କଠାରୁ ପାଇଥିବା ଟଙ୍କାରେ ଧୀବର ଟୋକା ବେଶ୍ ଭଲ ବ୍ୟବସାୟ କରୁଥାଏ । ରାଜା ହଠାତ୍ ଦେଖିଲେ ଯେ ପ୍ରଥମେ ଯିଏ ତାଙ୍କ ପାଖକୁ ଧୀବର ଟୋକାକୁ ନେଇ ଆସିଥିଲା, ସେ ପରିଚାରିକାଟି ସେହି କନ୍ୟା । ସେ ସବୁକଥା ବୁଝିଗଲେ । ଧୀବର ଟୋକାର ବୁଦ୍ଧି ଓ ସେ ପରିଚାରିକାର ସାହସକୁ ସେ ମନେ ମନେ ତାରିଫ୍ କଲେ ।

ସେ ଧୀବର ଟୋକା ସହ ସାକ୍ଷାତକୁ ଅପେକ୍ଷା କଲେ । ଯେତେବେଳେ ସେ ତା' ଭାବପତ୍ନୀକୁ ନେବା ପାଇଁ ଆସିଲା, ସେତେବେଳେ ରାଜା ହସି ହସି କହିଲେ, "ମୋତେ ପାୟସ ଭଲ ଲାଗିବା କଥା ଓ ରାଣୀ ମଣା ଚଢ଼ିବା କଥା ତମକୁ ମତ୍ସ୍ୟକନ୍ୟା କହିଥିଲା କି ଆଉ କୌଣସି କନ୍ୟା କହିଥିଲା, ସେକଥା ବର୍ତ୍ତମାନ ବୁଝିଲି ।"

ଧୀବର ଟୋକା ମୁଣ୍ଡ ତଳକୁ କରି ଠିଆ ହେଲା । ରାଜା ତା'କୁ ଭଲ ଉପହାରଟିଏ ଦେଇ କହିଲେ, "କିନ୍ତୁ ତମେ ମୋର ବହୁତ ଉପକାର କରିଛ । ମୁଁ ପ୍ରକୃତି ସହ ଓ ଲୋକଙ୍କ ସହ ମିଶିବାର ସୁଯୋଗ ତମେ କରିଦେଲ !"

"ସ୍ୱାମୀ ! ଆମ ଗାଁକୁ ରାସ୍ତା କରିବାଠୁଁ ଆରମ୍ଭ କରି ରାଜ୍ୟର କେତେ ହିତକର କାର୍ଯ୍ୟ ଆପଣ କଲେଣି । ସେପାଇଁ ରାଜ୍ୟର ସବୁ ପ୍ରଜା ଆପଣଙ୍କଠିଁ ଋଣୀ ।" ଧୀବର କହିଲା ।





# ଜାମାତା ନିର୍ବାଚନ

[ ୩ ]

ଦୁଷ୍କର୍ମ କରିବା ଲୋକ ଦୁଇପ୍ରକାରର । ପ୍ରଥମରେ କେତେକ ଚତୁର ଲୋକ ନିଜର ଚିକ୍କଣ କଥାରେ ଲୋକଙ୍କୁ ଭୁଲାଇ, ତାଙ୍କର ବିଶ୍ୱାସୀ ହେବାର ଛଳନା କରି ସେମାନଙ୍କୁ ଠକନ୍ତି । ଆଉ ଦ୍ୱିତୀୟ ପ୍ରକାରର ଲୋକ ନିଜର ବଳ ଓ ମିଥ୍ୟାଭୟ ଦେଖାଇ ସେମାନଙ୍କୁ ଡରାଇ ରଖିଥା'ନ୍ତି ଓ ନିଜେ ଲାଭ ଉଠାନ୍ତି । କିନ୍ତୁ ଦୁଇପ୍ରକାର ଯଦି ଏକା ସାଙ୍ଗରେ ଦେଖିବାକୁ ମିଳେ ତେବେ ତ ବିପଦ ।

ପୂର୍ବୋକ୍ତ ଗ୍ରାମର ଦୁଇ ମୁଖିଆ ଥିଲେ ଚତୁର । ତେଣୁ ଲୋକଙ୍କୁ ନାନା କଥା କହି ଭୁଲାଇ ରଖିଥା'ନ୍ତି । କିନ୍ତୁ ସେମାନଙ୍କ ଦୁଇ ପୁଅ ଥିଲେ ନିପଟ ମୂର୍ଖ । ଗ୍ରାମର ଲୋକମାନେ ଦୁଇ ମୁଖିଆଙ୍କ ସମ୍ମାନ କରୁଥିଲେ ବୋଲି ପୁଅ ଦୁଇଜଣ ପିଲାବେଳଠୁଁ ଚଗଲମି ଓ ଗେୃସ ଇତ୍ୟାଦି କରିବାରେ ଧୁରନ୍ଧର ହୋଇଗଲେ ।

ଦୁଇ ପୁଅଙ୍କ ନାମ ଥିଲା ବୀର ଓ ଧୀର । ନାମ ଅନୁସାରେ କାମ ତାଙ୍କର ସମ୍ପୂର୍ଣ୍ଣ ବିପରୀତ । ଦୁହେଁ ସାରା ଗ୍ରାମରେ ନାନା ପ୍ରକାର ଉତ୍ପାତ କରୁଥା'ନ୍ତି । ଲୋକଙ୍କ ବାଡ଼ି-ବଗିଚାରେ ପଶି ଫଳ ଗେୃସାଇବା, ଅନ୍ୟ ପିଲାଙ୍କୁ ବାଡ଼େଇବା, ଅନ୍ୟମାନଙ୍କ ଘର ଭାଙ୍ଗିବା ଇତ୍ୟାଦି ସେମାନଙ୍କର ଦୈନନ୍ଦିନ କାମ । ପାଠଶାଳାର ଦୁଆର ମୁହଁ ବି ସେମାନେ ମାଡ଼ନ୍ତି ନାହିଁ । ଗ୍ରାମବାସୀମାନେ ମଝିରେ ମଝିରେ ଯାଇ ସେମାନଙ୍କ ବାପାମାନଙ୍କୁ ଯାଇ ଏସବୁ କଥା କହନ୍ତି ।

ବାପାମାନେ ନାନା କଥା ଶୁଣିବା ପରେ ଥରେ ଦୁଇପୁଅଙ୍କୁ ଡାକି କହିଲେ, "ଆରେ

" ବସୁନ୍ଧର "

ତମେ ବାହେଁ ବଗିଚରେ ପଶି ଫଳ ଚୋରି କରୁଛ ? ଏବେ ଗୋଟିଏ କାମ କର । ଫଳ ଚୋରି ନକରି ଦୁଧ, ଦହି, ଲହୁଣୀ ଆଦି ଲୋକଙ୍କ ଘରେ ପଶି ଚୋରି କରିବ । ତା'ପର କଥା ଆମେ ବୁଝିବୁ ।"

ବାପମାନଙ୍କଠୁ ଏଭଳି ପ୍ରସ୍ତାବ ପାଇ ବୀର ଓ ଧୀର ତ ମହା ଖୁସି । ଏଣିକି ସେମାନେ ଦହି, ଦୁଧ, ସର ଲହୁଣୀ ସବୁ ଚୋରାଇବାରେ ଲାଗିଲେ । କିଛିଦିନ ପରେ ଗ୍ରାମଲୋକମାନେ ଏ ବିଷୟ ସେମାନଙ୍କ ବାପାମାନଙ୍କୁ କହିବାରୁ ସେମାନେ କହିଲେ, "ଗ୍ରାମବାସୀଗଣ, ଶୁଣ, ତମେମାନେ ଶ୍ରୀକୃଷ୍ଣ ବଳରାମଙ୍କ କଥା ଶୁଣିଛ ? ସେ ଥିଲେ ଭଗବାନ । ତଥାପି ପିଲାବେଳେ ସେ ଲହୁଣୀ ଚୋରାଇ ଖାଉଥିଲେ । ଆମ୍ଭର ଏଇ ବୀର ଓ ଧୀର, ଶ୍ରୀକୃଷ୍ଣ ଓ ବଳରାମଙ୍କ ଅଂଶ ନେଇ ଜନ୍ମ ହୋଇଛନ୍ତି । ତେଣୁ ପୂର୍ବଜନ୍ମର ଅଭ୍ୟାସ ଟିକିଏ ଅଛି । ତାକୁ ସହି ଯିବାକୁ ହେବ । ତମେମାନେ ଯଦି କୃଷ୍ଣଲୀଳା ବିଷୟ ଜାଣି ନଥାଅ ତ ତେବେ ପ୍ରତିଦିନ ସନ୍ଧ୍ୟାବେଳେ ଆମ ଘରେ ଭାଗବତ ପଢ଼ା ହେବ ତୁମେମାନେ ଆସି ଶୁଣିବ ।"

ଗ୍ରାମବାସୀମାନେ ଏ କଥାରେ ସନ୍ତୁଷ୍ଟ ହୋଇ ନିଜ ନିଜ ଘରକୁ ଫେରିଗଲେ । ସେହିଦିନଠାରୁ ସେମାନେ ଭାଗବତ ଶୁଣିଲେ; ଶ୍ରୀକୃଷ୍ଣ ବଳରାମଙ୍କ ଅଂଶରେ ଧୀର ଓ ବୀର ଜନ୍ମ ହୋଇଛନ୍ତି ଭାବି ସେମାନଙ୍କର ନାନା



ପ୍ରକାରର ଅତ୍ୟାଚାର ଅମ୍ଳାନ ବଦନରେ ସହ୍ୟ କଲେ । କିନ୍ତୁ କିଛିଦିନ ପରେ ଗ୍ରାମବାସୀମାନେ ଭାବିଲେ ଯେ ଶ୍ରୀକୃଷ୍ଣ ତ ଗ୍ରାମକୁ ଗ୍ରାମବାସୀଙ୍କୁ ନାନା ବିପଦରୁ ରକ୍ଷା କରୁଥିଲେ ଓ ନାନା ଅଲୌକିକ କଥା ସବୁ କରୁଥିଲେ । କିନ୍ତୁ ଏମାନେ ତ କେବଳ ଚୋରି ହିଁ କରୁଛନ୍ତି ।"

ସେମାନଙ୍କ ମନରେ ଏଇ ପ୍ରଶ୍ନ ଉଠିବା ମାନେ ସେମାନେ ଯାଇ ଦୁଇ ମୁଖିଆଙ୍କୁ ଏକଥା କହିଲେ ଓ ନିଜର ସନ୍ଦେହ ପ୍ରକାଶ କଲେ । ଏସବୁ ଶୁଣି ସେମାନେ ଟିକିଏ ଅଡୁଆରେ ପଡିଗଲେ । ତେବେ ଧୈର୍ଯ୍ୟ ଧରି କହିଲେ, "ତମେମାନେ ଯାହା କହୁଛ ତାହା ସଙ୍ଗତ । ତେବେ ଆଜି ରାତରେ ଆମେ ତପସ୍ୟା କରି



ଜାଣିବା ସେମାନେ କିଏ । କାହିଁକି ଏପରି ଦୁଷ୍ଟାମୀ କରୁଛନ୍ତି ।"

ସେମାନେ ଚାଲିଯିବା ପରେ ଦୁହେଁ ଏ ବିଷୟରେ କଥାବାର୍ତ୍ତା ହେଲେ । ଜଣେ କହିଲା, "ଏବେ ତ ବିଷମ ସମସ୍ୟା ଉପସ୍ଥିତ । ଆମ ପୁଅମାନଙ୍କ ଯୋଗୁ ଆମ ଛଳନା ସବୁ ଧରା ପଡ଼ିଯିବ । ଆମେ ସେମାନଙ୍କୁ ପ୍ରଥମେ କିମିତି ବାଟକୁ ଆଣିବା ।"

ଅନ୍ୟ ଜଣକ କହିଲା, "ଆମ ପୁଅମାନେ ଯେ ଆଉ ବାଟକୁ ଆସିବେ ସେ କଥା ଭୁଲିଯାଅ । ମୁଁ ଭାବିଥିଲି ପୁରାଣ ପଢ଼ି ଗ୍ରାମବାସୀମାନଙ୍କର ସହିବା ଶକ୍ତି ବଢ଼ିଯିବ । କିନ୍ତୁ ଇଏ ତ ବିପରୀତ ହେଲା । ସେମାନଙ୍କର ବୁଦ୍ଧି ଓ ବିବେକ ଅଧିକରୁ ଅଧିକ ଜାଗ୍ରତ ହେଉଛି । ସେମାନେ ଭଲମନ୍ଦ ବେଶି ଭଲ ଭାବରେ ବୁଝିପାରୁଛନ୍ତି । ତେଣୁ ପ୍ରଥମ କଥା ସେମାନଙ୍କର ପୁରାଣ ପଢ଼ିବା ବନ୍ଦ କରିଦେବା ଉଚିତ୍ ।"

ଅନ୍ୟଜଣକ କହିଲା, "ହଁ ସେକଥା ତ ଠିକ୍ ଏବେ କୁହ ଆମ ପୁଅମାନଙ୍କୁ କିପରି ଉଚିତ୍ ରାସ୍ତାକୁ ଆଣିବା ?"

ତା'ପରେ ଦୁଇଜଣ ବହୁ ସମୟ ଏ ବିଷୟରେ ଆଲୋଚନା କରି କିଛି ସ୍ଥିର କଲେ ।

ପରଦିନ ଗ୍ରାମବାସୀମାନେ ପୁରାଣ ଶୁଣିବାକୁ ଆସିଥାନ୍ତି । ସେତେବେଳେ ଧୂର୍ତ୍ତ ମୁଖିଆ ତାଙ୍କୁ ଜୟ ବିଜୟଙ୍କ ଗଳ୍ପ ପଢ଼ି ଶୁଣାଇଲେ—

"ଜୟ ବିଜୟ ହେଉଛନ୍ତି ଶ୍ରୀବିଷ୍ଣୁଙ୍କ ଦ୍ୱାରପାଳ । ଥରେ ସନକ, ସନନ୍ଦ ଆଦି ଋଷି ଶ୍ରୀବିଷ୍ଣୁଙ୍କୁ ଦର୍ଶନ କରିବାକୁ ଗଲେ । କିନ୍ତୁ ଜୟ ବିଜୟ ସେମାନଙ୍କୁ ଭିତରକୁ ଛାଡ଼ିଲେ ନାହିଁ ଓ କହିଲେ, "ଶ୍ରୀବିଷ୍ଣୁଙ୍କୁ ଦେଖା କରିବା ପାଇଁ ଏବେ ଉପଯୁକ୍ତ ସମୟ ନୁହେଁ । କିଛି ସମୟ ପ୍ରତୀକ୍ଷା କର, ପରେ ଯିବ ।" ଦୁଇ ଋଷି ଖୁବ୍ ରାଗି ଉଠିଲେ ଓ ଜୟ ବିଜୟଙ୍କୁ ଅଭିଶାପ ଦେଲେ କି, "ତମେ ଦୁହେଁ ରାକ୍ଷସ ପରି ବ୍ୟବହାର କରୁଛ ତେଣୁ ରାକ୍ଷସ ହୋଇ ଜନ୍ମ ହୁଅ ।"

ସେମାନେ ଅଭିଶାପ ପାଇ ଦୁଃଖିତ ହୋଇ ଶ୍ରୀବିଷ୍ଣୁଙ୍କୁ ସବୁକଥା ଜଣାଇଲେ; ଶ୍ରୀବିଷ୍ଣୁ ସବୁ

ଶୁଣି କହିଲେ, "ଏଥିରେ ତମର କିଛି ଦୋଷ ନାହିଁ । ପୁଣି ସେମାନଙ୍କ ଅଭିଶାପ ତ ଆଉ ପରିବର୍ତ୍ତନ କରାଯାଇ ପାରିବ ନାହିଁ । ତେଣୁ ତମମାନଙ୍କୁ ରାକ୍ଷସ ଜନ୍ମ ନେବାକୁହିଁ ପଡ଼ିବ । ଯଦି ତମେ ପୃଥିବୀ ଉପରେ ରାକ୍ଷସ ଜନ୍ମ ନେଇ ଭଲ କାର୍ଯ୍ୟ କରିବ ତ ସାତଜନ୍ମ ପରେ ମୋ ପାଖକୁ ଫେରି ଆସିବ । ଯଦି ରାକ୍ଷସ କାର୍ଯ୍ୟ କରିବ ତ ତିନିଜନ୍ମ ପରେ ମୋ ପାଖକୁ ଫେରିଆସି ପାରିବ ।"

ଏକଥା ଶୁଣି ଜୟ ବିଜୟ କହିଲେ, "ପ୍ରଭୁ, ଆମେ ଆପଣଙ୍କୁ ଛାଡ଼ି କୁଆଡ଼େ ରହିବୁ ? ତେଣୁ ରାକ୍ଷସ କାର୍ଯ୍ୟ କରୁ ପଛକେ ଶୀଘ୍ର କମିତ ଏଠାକୁ ଫେରି ଆସିବୁ । ତେଣୁ ଆମକୁ ଦ୍ୱିତୀୟ ବର ପ୍ରଦାନ କରନ୍ତୁ ।"

ଏହି ଭାବରେ ସେମାନେ ସତ୍ୟଯୁଗରେ ହିରଣାକ୍ଷ ଓ ହିରଣ୍ୟକଶିପୁ ଭାବରେ, ତ୍ରେତା-ଯୁଗରେ ରାବଣ ଓ କୁମ୍ଭକର୍ଣ୍ଣ ଭାବରେ ଓ ଦ୍ୱାପର ଯୁଗରେ କଂସ ଓ ଶିଶୁପାଳ ଭାବରେ ଜନ୍ମ ନେଇଥିଲେ ।

ତା'ପରେ ସେ କହିଲେ, "ଏବେ ମୁଁ ଯେଉଁ କାହାଣୀ ଶୁଣାଇଲି ତାହା ପୁରାଣ ଯୁଗର କଥା । ଏବେ ଆଗୁରି ଶୁଣ । ତିନିଯୁଗ ପରେ ଏବେ ଆସିଛି କଳିଯୁଗ । ଦିନେ କଳିଯୁଗର ଯୁଗପୁରୁଷ ଯାଇ ଶ୍ରୀବିଷ୍ଣୁଙ୍କୁ କହିଲେ, "ଭଗବାନ, ତିନିଯୁଗରେ ଜୟ ବିଜୟ ରାକ୍ଷସ ହୋଇ ଜନ୍ମ ହେଲେ ଓ ଆପଣ ପ୍ରତ୍ୟେକ ଥର ମର୍ତ୍ତ୍ୟକୁ ଯାଇ ସେମାନଙ୍କୁ ବଧ କରିଛନ୍ତି । ତେବେ ମୁଁ କାହିଁକି ସେ ଲୀଳାରୁ





ବଞ୍ଚିତ ହେବ ? ଆପଣ ମୋ ଉପରେ ଅନୁଗ୍ରହ କରି କିଛି ଗୋଟାଏ ବ୍ୟବସ୍ଥା କରନ୍ତୁ ।"

ଭଗବାନ ଶ୍ରୀବିଷ୍ଣୁ କଳିଯୁଗ ଉପରେ ଅନୁଗ୍ରହ କଲେ । ସେଥିପାଇଁ ସେହି ଜୟ ବିଜୟ ଆମ ଘରେ ଧୀର ଓ ବୀର ଭାବରେ ଜନ୍ମ ନେଇଛନ୍ତି । ଏମାନେ ପାପକାର୍ଯ୍ୟ ସବୁ କରି ଶୀଘ୍ର ଶ୍ରୀବିଷ୍ଣୁଙ୍କ ପାଖକୁ ଫେରିଯିବାକୁ ଚାହାନ୍ତି । ତେଣୁ ଏସବୁ କ୍ଷେତ୍ରରେ ଆମେ ସାଧାରଣ ପ୍ରାଣୀ ସେମାନଙ୍କର କ'ଣ କରିବୁ । ଯଦି ତାଙ୍କୁ ଆମେ ଏସବୁ କାର୍ଯ୍ୟ କରିବାକୁ ବାରଣ କରୁଛୁ ତ ଶ୍ରୀବିଷ୍ଣୁ ଆମ ଉପରେ କୋପ କରିବେ । ଏବେ ତମେମାନେ କୁହ ଯଦି ତାଙ୍କୁ ଦଣ୍ଡ ଦେବାକୁ ହେବ ଓ ଶ୍ରୀବିଷ୍ଣୁ ଆମ ଉପରେ କୋପ କଲେ ତୁମମାନଙ୍କର ଆପତ୍ତି ନାହିଁ ତେବେ ଆମର ପୁଅ ହେଲେ ମଧ୍ୟ ଆମେ ସେମାନଙ୍କୁ କଠିନ ଦଣ୍ଡ ଦେବୁ ।"

ଗ୍ରାମବାସୀମାନେ ଏକ ସ୍ୱରରେ କହିଲେ, "ନା, ନା, ଜୟ ବିଜୟଙ୍କୁ ଦଣ୍ଡଦେବେ କେବଳ ଶ୍ରୀବିଷ୍ଣୁ; ଆମେ ସେଥିପାଇଁ କିଏ ? ଏବେ ଆମେ ଶ୍ରୀବିଷ୍ଣୁଙ୍କର ପ୍ରତୀକ୍ଷାରେ ଥାଇ ସେମାନଙ୍କ ଉପଦ୍ରବ ସବୁ ସହ୍ୟ କରି ନେବା ।"

ସେହି ଦିନଠାରୁ ସେ ଦୁହିଁଙ୍କ ନାମ ଧୀର ଓ ବୀର ପରିବର୍ତ୍ତେ ହେଲା ଜୟ ଓ ବିଜୟ । ଏଣିକି ସେମାନେ ନିରଙ୍କୁଶ ଭାବରେ ସମସ୍ତଙ୍କ ଉପରେ ଅତ୍ୟାଚାର କଲେ ଓ ଦୁଷ୍କର୍ମମାନ କଲେ । ଗ୍ରାମବାସୀମାନେ ମଧ୍ୟ ତାହା ସହି ନେଉଥା'ନ୍ତି । ଏମିତି ଭାବରେ ଅନେକ ବର୍ଷ କଟିଗଲା । ଏବେ ସେମାନେ ଯୁବକ ହୋଇ ଗଲେଣି ତଥାପି ତାଙ୍କର ଦୁଷ୍ଟାମୀ ଓ ଦୁଷ୍କର୍ମ କୌଣସି ମତେ କମ୍ ହୋଇ ନଥାଏ ।

ଥରେ ସେ ଗ୍ରାମକୁ ଜଣେ ବିଦେଶୀ ଯୁବକ ଆସିଥାଏ । ତା'ର ବୟସ କୋଡ଼ିଏ ଦେଖିବାକୁ ଅତି ସୁନ୍ଦର, ମୁଖମଣ୍ଡଳରେ ଅପୂର୍ବ ତେଜ । ତା'ର ନାମ ଥିଲା ରାଜଦୀପ । ତାକୁ ଦେଖି ସମସ୍ତେ ଭାବିଲେ କି ସେ କୌଣସି ରାଜବଂଶର ହେବ ।

ରାଜଦୀପ ଗୋଟିଏ ଗଛମୂଳେ ବିଶ୍ରାମ କରୁଥାଏ । କିଛି ସମୟ ପରେ ରାସ୍ତାରେ

ଯାଉଥିବା ଜଣେ ଲୋକକୁ ଦେଖି ପଚାରିଲା, "ମହାଶୟ, ଏ ଗ୍ରାମରେ ଆଜି ପାଇଁ କେଉଁଠି ରହିବା ସକାଶେ ସ୍ଥାନ ମିଳିପାରିବ ?"

"ମୁଁ ମୁଖିଆଙ୍କୁ ପଚାରି କହିବି ।" କହି ବ୍ୟକ୍ତିଟି ଚାଲିଗଲା ।

ଏ ଗ୍ରାମ ବିଷୟରେ ରାଜଦୀପ କିଛି ଜାଣି ନଥିଲା । ଟିକିଏ ବିଶ୍ରାମ ନେବା ପରେ ଗ୍ରାମ ଆଡ଼କୁ ଗଲା । ବାଟରେ ଦେଖିଲା ଜଣେ ସ୍ତ୍ରୀ ଲୋକ ପାଣି ନେଇ ଯାଉଛି । ସେ କହିଲା, "ଭଉଣୀ ମୋତେ ବହୁତ ଶୋଷ । ଅଳ୍ପ ପାଣି ଦେଇପାରିବ ?"

ସ୍ତ୍ରୀ ଲୋକଟି ବ୍ୟସ୍ତ ହୋଇ କହିଲା, "ଟିକିଏ ଅପେକ୍ଷା କର ମୁଁ ଗ୍ରାମ ମୁଖିଆଙ୍କୁ ପଚାରି ଆସେ ।" ତା'ପରେ ସେ ଚାଲିଗଲା ।

ତା'ପରେ ରାଜଦୀପ ଯାହାକୁ ଭେଟୁଥାଏ କିଛି ନା କିଛି ପ୍ରଶ୍ନ ପଚାରୁଥାଏ । କିନ୍ତୁ ସମସ୍ତେ ଏକହିଁ ଉତ୍ତର ଦେଉଥା'ନ୍ତି ।

ବାଟରେ ଯାଉଁ ଯାଉଁ ଶୁଣିଲା ଗୋଟିଏ ଘର ଭିତରୁ କ୍ରନ୍ଦନ ରୋଳ ଉଠୁଛି । ଘଟଣା କ'ଣ ଜାଣିବା ପାଇଁ ସେ ଭିତରେ ପଶି ଦେଖିଲା ଏକ ଦଶବର୍ଷର ବାଳକର ମୁମୂର୍ଷୁ ଅବସ୍ଥା । ତା'ର ଆସନ୍ନ ମୃତ୍ୟୁ କଥା ଭାବି ତା'ର ମା' ଓ ଅନ୍ୟାନ୍ୟ ସ୍ତ୍ରୀ ଲୋକମାନେ ବିଳାପ କରୁଛନ୍ତି ।

ରାଜଦୀପ ପଚାରିଲା, "କାହିଁକି କାନ୍ଦୁଛ, ଘଟଣା କ'ଣ ?" ସେମାନେ ଏକ ସ୍ୱରରେ କହିଲେ, "ତମେ ତ ବିଦେଶୀ ଆମେ ମୁଖିଆଙ୍କ ଅନୁମତି ନ ନେଇ ତୁମକୁ ତ କୌଣସି ଉତ୍ତର ଦେଇ ପାରିବୁ ନାହିଁ ।"



ଆଗନ୍ତୁ ଗ୍ରାମବାସୀଙ୍କ ମୂର୍ଖତା ବିଷୟରେ କିଛି କିଛି ଅଭିଜ୍ଞତା ଥିଲା । ଏଠାରେ ମଧ୍ୟ ସେହି ଏକହିଁ କଥା । ତେଣୁ ସେ ଆଉ କିଛି ନ ପଚାରି ମୁମୂର୍ଷୁ ବାଳକ ଆଡ଼କୁ ଆଗେଇ ଯାଇ ତା'ର ନାଡ଼ୀ ଚିପି ଦେଖିଲା ଓ ତା'ପରେ କହିଲା, "ତମେ ସବୁ କାନ୍ଦ ବନ୍ଦ କର । ପିଲାକୁ ମୁଁ ଔଷଧ ଦେଇ ଭଲ କରିଦେବି ।" ରାଜଦୀପ ଥିଲା ଜଣେ ବୈଦ୍ୟ ।

ଏକଥା ଶୁଣି ଅନ୍ୟ ଜଣେ ସ୍ତ୍ରୀଲୋକ କହିଲା, "ଆମେ ସବୁ ଗତଜନ୍ମରେ ହୁଏତ କିଛି ପାପ କରିଛୁ ସେଥିପାଇଁ ମୋ ପୁଅ ମରିଯିବ । ଆମ ଗ୍ରାମ ମୁଖିଆ ଔଷଧ ଦେଉଥିଲେ କିନ୍ତୁ କିଛି ଫଳ ହେଲା ନାହିଁ । ତେଣୁ ଆଉ କିଏ ଚିକିତ୍ସା କଲେ, ସେ ବଞ୍ଚିବ ତ ନାହିଁ, ମୃତ୍ୟୁ ହେବା ମାନେ ନରକକୁ ଯିବ ।"

ରାଜଦୀପ ସମସ୍ତଙ୍କୁ ଅନୁରୋଧ କଲା ବାଳକକୁ ଚିକିତ୍ସା କରିବା ପାଇଁ ତାକୁ ଅନୁମତି ଦେବାକୁ । ସମସ୍ତେ ଏକାସ୍ୱରରେ ନାହିଁ କଲେ । ପରେ ସେ ରାଗିଯାଇ କହିଲା, "ତୁମେ ଅନୁମତି ଦିଅ ବା ନ ଦିଅ ମୁଁ ଚିକିତ୍ସା କରିବି । ମୋ ସାମନାରେ ଜଣେ ପିଲା ମରିଯିବ ଅଥଚ ମୁଁ ତାକୁ ବଞ୍ଚାଇ ପାରିବି, କିନ୍ତୁ ତମେମାନେ ଅନୁମତି ଦେବନାହିଁ ଏକଥା ମୁଁ ଶୁଣିବି ନାହିଁ ।"

"ନା, ନା, ଆମେ ତୁମକୁ ଚିକିତ୍ସା କରିବାକୁ ଅନୁମତି କଦାପି ଦେବୁନାହିଁ ।" ସମସ୍ତେ କହିଲେ ।

ରାଜଦୀପ ଉତ୍ତେଜିତ ହୋଇ କହିଲା, "ମୁଁ ବି ଦେଖୁଛି ତମେମାନେ କିପରି ମୋ ଚିକିତ୍ସା କରିବାରେ ବାଧା ଦେବ । ତୁମ ମୁଖିଆ ଏହାର ଚିକିତ୍ସା କରିବାକୁ ତ ମନା କରିନାହିଁ ।"

ଏକଥା ଶୁଣି ସମସ୍ତେ ଅସୁବିଧାରେ ପଡ଼ିଲେ । ସମସ୍ତେ ଲୁହାଲୁହି ହେଲେ, "ହଁ ଏ ବିଦେଶୀ ଯାହା କହୁଛି ସତ କଥା । ଆମେ ଶୀଘ୍ର ଯାଇ ମୁଖିଆଙ୍କ ଅନୁମତି ନେଇ ଆସିବା ।" ତା'ପରେ ସେମାନଙ୍କ ଭିତରୁ ଦୁଇଜଣ ମୁଖିଆଙ୍କ ଘରକୁ ଦୌଡ଼ିଲେ । (କ୍ରମଶଃ)



## ପ୍ରକୃତିର ବିସ୍ମୟ!

# ପିର୍‌ହାନା

ଦକ୍ଷିଣ ଆଫ୍ରିକାର ନଦୀ ସବୁରେ ପିର୍‌ହାନା ନାମକ ଏକ ପ୍ରକାର ଭୟଙ୍କର ମତ୍ସ୍ୟ ଦେଖାଯା'ନ୍ତି । ସେମାନେ ୧୬ ପ୍ରକାରର; ତେବେ ୪ ପ୍ରକାର ହେଉଛନ୍ତି ମନୁଷ୍ୟଙ୍କ ପାଇଁ ବିପଜ୍ଜନକ । ଏମାନେ ହଜାର ହଜାର ସଂଖ୍ୟାରେ ଦଳ ବାନ୍ଧି ପହଁରନ୍ତି ।



# ଅତ୍ୟଧିକ ବର୍ଷା



ଅଲେ ଅଲେ ନାମକ ପର୍ବତ ପ୍ରଦେଶରେ ବର୍ଷକୁ ୩୩୫ ଦିନ ବର୍ଷା ହୁଏ ଏବଂ ବୃଷ୍ଟିର ପରିମାଣ ପ୍ରାୟ ୪୮୬.୧ ଇଞ୍ଚ ହୋଇଥାଏ ।

# ରକ୍ତ ଆଖି

ଆମେରିକାରେ ଏକ ପ୍ରକାର ମଣ୍ଡୁକ ବାସ କରନ୍ତି, ଯେଉଁମାନେ ଇଚ୍ଛା କଲେ ଆଖିରୁ ରକ୍ତ ଛିଟକାଇ ପାରନ୍ତି । ସେମାନେ ଶିର ଭିତରେ ରକ୍ତସଞ୍ଚାରଣ ଅଧିକ କରି, ଆଖି ଭିତରେ ଥିବା ଛୋଟ ଛୋଟ ନଳୀ ଭିତର ଦେଇ ସେମାନେ ଆତ୍ମରକ୍ଷା କରିବା ପାଇଁ ଏପରି କରନ୍ତି ।



"ମେରି"

ବାଇଶ କ୍ୟାରେଟ୍ ସ୍ୱର୍ଣ୍ଣାଚ୍ଛାଦିତ ଅଲଙ୍କାର ଜଗତରେ ବିଶ୍ୱସ୍ତ ଓ ବିଖ୍ୟାତ ନାମ ! ସଚ୍ଚା କନକ ଏବଂ ଅତୁଳନୀୟ ସୌନ୍ଦର୍ଯ୍ୟ ! ସବୁ ପ୍ରକାର ଋତୁରୁ ସୁହାଇଲ ଭଳି ନାନା ବିଧି ଅଲଙ୍କାର !

ମଗାଇଲ୍ ବେଳେ ଅଙ୍କ କାରର ନମ୍ବର ଲେଖିବେ । ଭି. ପି. ଖର୍ଚ୍ଚ ଅଲଗା ।

ମାଗଣା ତାଲିକା ପାଇଁ ଲେଖନ୍ତୁ । (ଏଜେଣ୍ଟ ଆବଶ୍ୟକ)

No.204 Rs. 150 50

No.57 Rs. 75/50

No.95 Rs. 75/50

No. 78. Rs. 50 50

No.117 Rs.40 50

No.98 Rs. 75/50

No. 81. Rs. 50/50

No.136 Rs. 50 50

No.18 Rs. 250 50

No.74 Rs. 75/50 STONE

No.32 Rs. 200 50

No.28 Rs. 225 50

No.140 Rs. 50/50

No.21 Rs. 250 50

No.181 Rs. 65 50

No.129 Rs. 50 50

No.111 Rs.25 50

No.146 Rs. 100 50

No.147 Rs. 100 50

No.96 Rs. 75/50

HEAD CHUTTY

No.44 Rs. 150/50

No.41 Rs. 150/50

No.149 Rs. 100 50

No.150 Rs. 100 50

No.165 Rs. 50/50

No.99 Rs. 75/50

No.167 Rs. 50/50

No.159 Rs. 65 50

No.102 Rs. 75/50

No.151 Rs. 100 50

No.152 Rs. 100 50

No.145 Rs. 80 50

No.191 Rs. 65 50

No.192 Rs. 75 50

# MERI GOLD COVERING WORKS

P.O. BOX : 1405, 14, RANGANATHAN STREET,
T. NAGAR, MADRAS-600 017, INDIA.

# ଫଟୋ-ପରିଚୟ-ପ୍ରତିଯୋଗିତା ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜୁଲାଇ ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



V. Rajamani



B. C. Ravichandar

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ମେ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମାର୍ଚ୍ଚ '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଖେଳରେ ଛଳରେ ପଢ଼ାଉଛ ଯେବେ ଅଜା !
ଦ୍ୱିତୀୟ ଚିତ୍ର : କାଗଜେ ଖେଳରେ ପାଇଛକି କେବେ ମଜା ?
ପୁରସ୍କାର ବିଜେତ୍ରୀ : ମନସ୍ୱିନୀ ପାତ୍ର, ମାଲକାନଗିରି ।
ବିଜେତ୍ରୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

---

## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦
ମନିଅର୍ଡର ପଠାଇବା ଠିକଣା :
ଡଲ୍‌ଟନ୍ ଏଜେନ୍‌ସିଜ୍, ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ, ବଡ଼ପଲନୀ, ମାଡ୍ରାସ-୬୦୦୦୨୬
ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :
ଚନ୍ଦାମାମା ପବ୍‌ଲିକେଶନସ, ଚନ୍ଦାମାମା ବିଲ୍‌ଡିଙ୍ଗସ, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI

